# ORIYA
# UPPER PRIMAR
# GEOGRAPHY READER

ABHIRA... B.L.

ଓଡ଼ିଆ ଉଚ୍ଚ ... ପାଠ ।

ଶ୍ରୀ ଅଭିରାମ ... ।



୦ ୫ ୧୦ ସ୍କେଲ ୨୦ ୩୦ ଫୁଟ

MACMILLAN & CO., LIMITED

CALCUTTA, BOMBAY AND LONDON.



Three Annas. ମୂଲ୍ୟ ୦ ୶/ ଅଣା ।

# Macmillan's

# Vernacular Hand Maps.

In Bengali, Hindi, Urdu, and Oriya
comprising

THE PROVINCES, DIVISIONS & DISTRICTS OF BENGAL

*Coloured—Price 1 Anna each.*

---

ମାକ୍‌ମିଲନର

ହାଣ୍ଡମାପ୍ ବା ଛୋଟ ମାନଚିତ୍ର

ବଙ୍ଗଳା, ହିନ୍ଦି, ଉର୍ଦ୍ଦୁ ଓ ଓଡ଼ିଆ ଭାଷାରେ

ସୁନ୍ଦର ରଙ୍ଗରେ

ସମସ୍ତ ବଙ୍ଗଦେଶର ବିଭାଗ, ଜିଲ୍ଲା ପ୍ରଭୃତି ଅଙ୍କିତ ।

ମୂଲ୍ୟ ଏକ ଅଣା ।

ORIYA

UPPER PRIMARY

# GEOGRAPHY READER

BY

ABHIRAM BHUNJ, M.A., B.L.

## ଓଡ଼ିଆ ଉଚ୍ଚ ପ୍ରାଥମିକ ଭୂଗୋଳ-ପାଠ ।

ଶ୍ରୀ ଅଭିରାମ ଭଞ୍ଜ ଏମ୍.ଏ, ବି.ଏଲ୍, କର୍ତ୍ତୃକ ପ୍ରଣୀତ ।



ସ୍କେଲ
୦ ୫ ୧୦ ୨୦ ୩୦ ଫିଟ

MACMILLAN & CO., LIMITED

CALCUTTA, BOMBAY AND LONDON

# ସୂଚୀପତ୍ର ।

—•—

## ମାନଚିତ୍ର ।

# ଅପର ପ୍ରାଇମେରୀ ଭୂଗୋଳ ।

## ୧ମ ପାଠ ।

ତୁମ୍ଭେ ଯେଉଁ ଗ୍ରାମ ବା ସହରରେ ଥାଅ ତହିଁର ନାମ କଅଣ? ସେହିପରି କି ତହୁଁ ବଡ଼ ବା ସାନ ଗ୍ରାମ ଓ ସହର ଆଉ କେତେ ଅଛି ଓ କେଉଁ ଆଡ଼େ ଅଛି? ଜଜ ଓ କମିଶ୍ନର ସାହେବମାନେ କେଉଁ ଠାରେ ଥାନ୍ତି? କଟକ ସହର ତଳେ ଯେଉଁ ନଦୀ ଅଛି ତାହା କେଉଁଠୁ, କେଉଁ ରାଜ୍ୟରୁ ବହିଆସି କେଉଁ ଆଡ଼େ ଯାଇଅଛି? ସେପରି ନଦୀ ଆଉ କେତେ ଅଛି ଓ କେଉଁ ଠାରେ ଅଛି? ଓଡ଼ିଆ କଥା କେତେ ଲୋକେ କହନ୍ତି? କେତେ ଲୋକେ ବଙ୍ଗଳା ବା ତେଲଙ୍ଗୀ କଥା କହନ୍ତି? ସେମାନେ କେଉଁ-ଠାରେ ଥାନ୍ତି? ଗଙ୍ଗାସ୍ନାନ କରିବାକୁ ହେଲେ କେଉଁ ଠାକୁ ଯାନ୍ତି? ମଧୁର କମଳା ଲେମ୍ବୁ କେଉଁ ଆଡ଼ୁ ଆସେ? ଯେଉଁ ଗୃ ଖାଅ ତାହା କେଉଁ ଠାରୁ ଆସେ? ଯେଉଁ କାବୁଲିମାନେ କସ୍‌ମିଶ ବାଦାମ ଆଣନ୍ତି ସେମାନଙ୍କ ମୁଲକ କେଉଁ ଆଡ଼େ? କେରୋସିନ ତେଲ କେଉଁ ଠାରୁ ଆସେ? ଲୁହା, ରୁପା, ସୁନା ହୀରକାର ଖଣି କେଉଁ ରାଜ୍ୟରେ ଅଛି? ସାହେବମାନଙ୍କ ମୁଲକ କେତେ ଦୂର?

ଏ କଥାମାନ ତୁମ୍ଭେ ଜାଣ କି? ଜାଣି ନ ଥିଲେ କାହାକୁ ପଚାରିବ? କେହି ଜଣେ ସବୁ କଥା କହି ପାରିବ ନାହିଁ । ଗୋଟିଏ ଦିଓଟି ଦେଶରେ ବୁଲିଲେ ବୁଲିଲେ ମଧ୍ୟ ସବୁ ଜାଣି ପାରିବ ନାହିଁ । କିନ୍ତୁ ଏକ ସହଜ ଉପାୟ ଅଛି; ତାହା କଲେ ଘରେ ବସି ସହଜରେ ସବୁ ଜାଣି ପାରିବ। ଭୂଗୋଳଶାସ୍ତ୍ରପାଠ ସେହି ଉପାୟ ଅଟେ ।

ବର୍ତ୍ତମାନ ଯେତେ କଥା ପଚରାଗଲା ସବୁଗୁଡ଼ିକର ଉତ୍ତର ଭୂଗୋଳଶାସ୍ତ୍ରରେ ମିଳିବ । କେତେ୨ ଦେଶର କେତେ୨ ପଣ୍ଡିତଲୋକେ ପୃଥିବୀର ସକଳ ସ୍ଥାନରେ ବୁଲି, ଦେଖି, ଶୁଣି, ଗଣନା ଓ ମାପ କରି ଯାହା ଜାଣିଅଛନ୍ତି ତାହା ପୁସ୍ତକରେ ଲେଖା ଅଛି । ସେମାନେ ସବୁ ଦେଶର ନକ୍ସା ମଧ୍ୟ ତିଆରି କରିଅଛନ୍ତି ସେ ସବୁଥିରୁ ସାର କଥା-ମାନ ନେଇ ଭୂଗୋଳଶାସ୍ତ୍ର ହୋଇଅଛି । ତାହା ମନୋଯୋଗ ସହିତ ପାଠକଲେ ତୁମ୍ଭ ଗ୍ରାମ କେଉଁ ଜିଲ୍ଲାରେ, ସେ ଜିଲ୍ଲା କେଉଁ ପ୍ରଦେଶରେ, ସେ ପ୍ରଦେଶରେ ଆଉ କେତେ ଜିଲ୍ଲା ଅଛି, ସହର, ନଦୀ, ପର୍ବତ ଅଛି କି ନା, କେଉଁ ଦେଶରେ କେତେ ଲୋକ ଅଛନ୍ତି, ସେମାନେ କି କଥା କହନ୍ତି, ସେଠାରେ କି ଭଲ ପଦାର୍ଥମାନ ମିଳେ, ସେ ଦେଶ କେତେଢ଼, ତହିଁରେ ରାଜା କିଏ ଇତ୍ୟାଦି ସକଳ ବିଷୟ ଜାଣି ପାରିବ ।

ଯେଉଁ ଶାସ୍ତ୍ର ପାଠକଲେ ସମୁଦାୟ ପୃଥିବୀର ବିବରଣ ଜାଣି ପାରିବ ତାହାକୁ ଭୂଗୋଳଶାସ୍ତ୍ର ବୋଲନ୍ତି ।

---

## ୨ୟ ପାଠ ।

ମନେକର, ତୁମ୍ଭେ ମାମୁଙ୍କ ଗ୍ରାମକୁ ଯାଇଅଛ; ସେଠାରେ ଜଣେ ପଚାରିଲେ "ତୁମ୍ଭ ଘରଠାରୁ ତୁମ୍ଭ ଗ୍ରାମର ସ୍କୁଲ କେତେ ଦୂର ଓ କେଉଁ ଆଡ଼େ?" ଏହାର ଜବାବ କଅଣ ଦେବ? ମାମୁଙ୍କ ଘରଠାରୁ ତାଙ୍କ ଠାକୁରଘର ଯେତେ ଦୂର ତୁମ୍ଭ ଘରଠାରୁ ସ୍କୁଲ ତେତିକି ଦୂର ବୋଲି କହିଲେ ସେ ବୁଝି ପାରିବେ; କିନ୍ତୁ କେଉଁ ଆଡ଼େ କିପରି କହିବ? ତୁମ୍ଭ ଘରର ବାଁ ଆଡ଼େ କି ଡାହାଣ ଆଡ଼େ ବୋଲି କହିଲେ ଚଳିବ ନାହିଁ । ତୁମ୍ଭ ଦାଣ୍ଡଦ୍ୱାରରେ ଠିଆ ହୋଇ ଦାଣ୍ଡକୁ ଚାହିଁଲେ ଯେଉଁ ଆଡ଼ ଡାହାଣ, ସେହିଠାରେ ଠିଆ ହୋଇ ଘର ଭିତରକୁ ଚାହିଁଲେ ସେ ଆଡ଼ ବାଁ-ହାତ ହେବ । ତେବେ ସେଥିରୁ ସେ କଅଣ ଠିକଣା କରିବେ?

ତେବେ କେଉଁ ଆଡ଼େ ବୋଲି କହିଲେ ସମସ୍ତେ ବୁଝି ପାରିବେ? ସ୍କୁଲ ତୁମ୍ଭ ଘରର ପୂର୍ବ, ପଶ୍ଚିମ, ଦକ୍ଷିଣ କି ଉତ୍ତର ଆଡ଼େ କହିଲେ ଆଉ କାହାରି କିଛି ସନ୍ଦେହ ରହିବ ନାହିଁ । ତାହା କପରି ଜାଣିବ? ସକାଳେ ଉଠିଦେଖିବ, ସୂର୍ଯ୍ୟ ଯେଉଁ ଆଡ଼େ ଦିଶୁଅଛନ୍ତି ସେହିଆଡ଼େ ପୂର୍ବ, ସୂର୍ଯ୍ୟଙ୍କୁ ଚାହିଁ ଠିଆ ହୋଇ ରହିଲେ ତୁମ୍ଭର ପଛଆଡ଼ ପଶ୍ଚିମ, ଡାହାଣ ହାତ ଆଡ଼େ ଦକ୍ଷିଣ ଓ ବାଁ ହାତ ଆଡ଼େ ଉତ୍ତର । ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ—ଏହି ଚାରିଗୋଟି ଦିଗ । ତୁମ୍ଭ ଘରର ଚାରି ଦିଗରେ କଅଣ ଅଛି କହ ।

ତୁମ୍ଭ ଘରଠାରେ ଠିଆହୋଇ ସକାଳେ ସୂର୍ଯ୍ୟଙ୍କୁ ଚାହିଁ ରହ; ଯେବେ ସ୍କୁଲ ତୁମ୍ଭର ପଛଆଡ଼କୁ ରହିଲା ତେବେ ତାହା ତୁମ୍ଭ ଘରର ପଶ୍ଚିମ ଦିଗରେ, ଆଗଆଡ଼େ ରହିଲେ ପୂର୍ବ ଦିଗରେ, ଡାହାଣ ଆଡ଼େ ରହିଲେ ଦକ୍ଷିଣରେ, ବାଁ ଆଡ଼େ ରହିଲେ ଉତ୍ତରରେ ବୋଲି ଜାଣିବ ।

ଆଉ ଗୋଟିଏ କଥା ଅଛି । ଯଦି ତୁମ୍ଭ ସ୍କୁଲ ବରାବର ସିଧା ଆଗ, ପଛ, ଡାହାଣ କି ବାଁ ଆଡ଼େ ନ ରହି ଗୋଟାଏ କୋଣରେ ରହିଲା, ତେବେ କଅଣ ବୋଲି କହିବ? ଚାରି ଆଡ଼ର ଯେମନ୍ତ ଚାରିଗୋଟି ଦିଗ ବୋଲି ନାମ ଜାଣିଲ ତେମନ୍ତ ଚାରିଗୋଟି କୋଣର ମଧ୍ୟ ନାମ ଅଛି ।

ଉତ୍ତର ଓ ପୂର୍ବ ଦିଗଯୋଡ଼ିକ ମଝିରେ ଯେଉଁ କୋଣ ତାହା ଈଶାନକୋଣ; ଦକ୍ଷିଣ ଓ ପୂର୍ବ ମଝିରେ ଅଗ୍ନିକୋଣ; ଦକ୍ଷିଣ ଓ ପଶ୍ଚିମ ମଝିରେ ନୈଋତକୋଣ; ଏବଂ ଉତ୍ତର ଓ ପଶ୍ଚିମ ମଝିରେ ବାୟୁକୋଣ ।



ଏଗୁଡ଼ିକୁ ବିଦିକ୍ ମଧ୍ୟ କୋଲନ୍ତି । ଈଶାନ, ଅଗ୍ନି, ନୈଋତ ଓ ବାୟୁ—ଏହି ଚାରି ଗୋଟି ବିଦିକ୍। ଏବେ କହ, ତୁମ୍ଭ ଘରର କେଉଁ କୋଣରେ କଅଣ ଅଛି?

ଦିନବେଳେ ଦିଗ ଜାଣିବାକୁ ହେଲେ ସୂର୍ଯ୍ୟଙ୍କୁ ଚାହିଁବ; କିନ୍ତୁ ସୂର୍ଯ୍ୟତ ରାତିରେ ଦିଶନ୍ତି ନାହିଁ । ରାତିରେ କିପରି ଦିଗ ଜାଣିବ? ସେଥିପାଇଁ ଏକ ପ୍ରକାର ଯନ୍ତ୍ର ଅଛି । ତାହାକୁ ଇଂରେଜୀରେ କମ୍ପାସ ବୋଲନ୍ତି, ତାହାର ଛବି ପାଖରେ ଅଛି, ଦେଖ । ତହିଁରେ ଗୋଟିଏ ଛୁଞ୍ଚି ଆଉ ଖଣ୍ଡିଏ ଲୁହା ଉପରେ ପେଣ୍ଟରେ ଭିଡ଼ା ହୋଇଥାଏ



ଏବଂ ବୁଲାଇ ଦେଲେ ବୁଲି ପୁଣି ସ୍ଥିର ହୋଇ ରହେ । ସ୍ଥିର ଥିଲାବେଳେ ଛୁଞ୍ଚିର ମୁନ ସଦାବେଳେ ଉତ୍ତର ଆଡ଼କୁ ରହେ । ଯେଉଁଠାରେ ମୁନ ରଖ, ଯେତେବେଳେ ଇଚ୍ଛା ଦେଖ, ଛୁଞ୍ଚିର ମୁନ ନିଶ୍ଚୟ ଉତ୍ତର ଦିଗକୁ ଥିବ । ହାତରେ ଧରି ବୁଲାଇ ଦେଲେ ସୁଦ୍ଧା ପେଣ୍ଟ ଉପରେ ବୁଲି ଛୁଞ୍ଚି ଯେତେବେଳେ ସ୍ଥିର ହେବ ସେତେବେଳେ ତାହାର ମୁନ ଉତ୍ତରକୁ ରହିବ । ଉତ୍ତର ଦିଗ ଜଣାଗଲେ ଆଉ ତିନି ଦିଗ ସହଜରେ ଜାଣି ପାରିବ ଏବଂ ବିଦିକ୍ ମଧ୍ୟ ଜାଣି ପାରିବ ।

---

୩ୟ ପାଠ ।

ମନେକର ତୁମ୍ଭର ବଡ଼ ଭାଇ କଟକର ଗୋଟିଏ ସ୍କୁଲରେ ପଢ଼ନ୍ତି । ଖରା ଛୁଟିରେ ସେ ଗ୍ରାମକୁ ଆସିଅଛନ୍ତି । ତାଙ୍କ ସ୍କୁଲଘର କେତେ, ତହିଁରେ କେତୋଟି ବଖରା ଅଛି, ଚାରିଆଡ଼େ କେତେ ପଡ଼ିଆ ଅଛି ଇତ୍ୟାଦି କଥା ତୁମ୍ଭେ ତାଙ୍କୁ ପଚାରିଲ । ସେ କହିଲେ ସ୍କୁଲଘରଟି ୧୦୦ ଫୁଟ ଉତ୍ତରରୁ ଦକ୍ଷିଣକୁ ଲମ୍ବା, ୭୦ ଫୁଟ ପୂର୍ବରୁ ପଶ୍ଚିମକୁ

ଓସାର ; ତହିଁରେ ଗୋଟିଏ ବଡ଼ ବଖରା ଅଛି ଓ ଆଉ ଦୁଇଗୋଟି ସାନ ବଖରା ଅଛି ; ଏବଂ ଦୁଇଦଗରେ ଅଳ୍ପ ପଡ଼ିଆ ଅଛି ।

ଏତେ କଥାରୁ ତୁମ୍ଭେ କଅଣ ବୁଝିଲ ? ସେ କହିସାରନ୍ତା ବେଳକୁ ତୁମ୍ଭେ ପାସୋରି ସାରିଥିବ । ସେ ତୁଣ୍ଡରେ ନ କହି କାଗଜରେ ଲେଖି ଦେଲେ ମଧ୍ୟ ବାରମ୍ବାର ପଢ଼ି ସୁଦ୍ଧା ଭଲକରି ଜାଣି ପାରିବ ନାହିଁ । କିନ୍ତୁ ନକ୍ସା କାଟି ଦେଖାଇଦେଲେ ସହଜରେ ଆପେ ବୁଝି ପାରିବ । ନକ୍ସା କପରି କାଟିବାକୁ ହୁଏ, କାଟିବା ଆଗରୁ କଅଣ ? କରିବାକୁ ହୁଏ, ତାହା ମନୋଯୋଗ ସହିତ ଶିକ୍ଷା କର ।

ପ୍ରଥମେ ତୁମ୍ଭ ସ୍କୁଲଘରର ନକ୍ସା କାଟିବା । ସେ ଘର କେଉଁ ଦଗରୁ କେଉଁ ଦଗକୁ କେତେ ଲମ୍ବା, ମାପ କର ; ମନେକର ତାହା ଉତ୍ତରରୁ ଦକ୍ଷିଣକୁ ୬୦ ଫୁଟ ଲମ୍ବା ହେଲା । ଓସାର ମାପ ; ମନେକର ତାହା ପୂର୍ବରୁ ପଶ୍ଚିମକୁ ୩୦ ଫୁଟ ହେଲା । କାଗଜର ଉପର ଭାଗଟି ଉତ୍ତର, ତଳ ଦକ୍ଷିଣ, ଡାହାଣ ଆଡ଼ ପୂର୍ବ ଓ ବାଁ ଆଡ଼ ପଶ୍ଚିମ ବୋଲି ସମସ୍ତେ ଜାଣନ୍ତି । ତେବେ ସ୍କୁଲଘରର ଲମ୍ବା ଦେଖାଇବା ପାଇଁ କାଗଜର ଉପରୁ ତଳକୁ ଗୋଟିଏ ସିଧାଗାର ଟାଣ; ତାହା ୬୦ ଫୁଟ ହେବ । କିନ୍ତୁ ଏତେ କାଗଜ କାହୁଁ ମିଳିବ? ମିଳି ପାରିବ ନାହିଁ । ତେବେ କଅଣ କରିବ ? ଯଦି କାଗଜରେ ଏକ ଇଞ୍ଚ ଗାରକୁ ଜମିର ୧୦ ଫୁଟ ଲମ୍ବା ମନେକର, ତେବେ କାଗଜରେ ୬ ଇଞ୍ଚ ଗାର ଦେଖିଲେ ତାହା ଜମିରେ ପ୍ରକୃତ ୬୦ ଫୁଟ ଲମ୍ବା ଜାଣିବାକୁ ହେବ । ଅତଏବ ଉପରୁ ତଳକୁ ଗୋଟିଏ ୬ ଇଞ୍ଚ ଗାର ଟାଣ ; ପୁଣି ତହିଁର ଗୋଟିଏ ମୁଣ୍ଡରୁ ଡାହାଣରୁ ବାଁକୁ ୩ ଇଞ୍ଚ ମାପର ଆଉ ଗୋଟିଏ ଗାର ଟାଣିଲେ ତହିଁରୁ ଘରର ଓସାର ୩୦ ଫୁଟ ଜଣାଯିବ । ପ୍ରଥମ ଗାରର ଅରମୁଣ୍ଡରୁ ଆଉ ଗୋଟିଏ ଗାର ସେହିପରି ଟାଣ ଏବଂ ଉପର ଓ ତଳ ଦୁଇ ଗାରକୁ ଆଉ ଗୋଟିଏ ଗାର ଟାଣି ଲଗାଇଦିଅ । ଏବେ ସ୍କୁଲଘରର ଦୁଇପାଖଯାକର ନକ୍ସା ହେଲା ।

ନକ୍ସା କାଗଜ ଯଦି ଅଳ୍ପର ସ୍ଥାନ ହୁଏ, ତେବେ ନକ୍ସା ମଧ୍ୟ ଅଳ୍ପର ସ୍ଥାନ ହୋଇ ପାରେ । ଜମିର ୧୦ ଫୁଟ ପାଇଁ କାଗଜରେ ଅଧ ଇଞ୍ଚେ ଗାର ଟାଣିଲେ ନକ୍ସାର ଲମ୍ବା ୩ ଇଞ୍ଚ ଓ ଓସାର ଦେଢ଼ ଇଞ୍ଚ ହେବ । ଏହିରୂପେ ଭୂମିରେ ପ୍ରକୃତ ଯାହା ଅଛି ତାହାକୁ ନକ୍ସାରେ ଉଣା କରି ଲେଖିବାର ନାମ ସ୍କେଲ୍ ।




ସ୍କେଲ୍ ସଦାବେଳେ ସମାନ ନ ଥାଏ । ଯେ ନକ୍ସା କରନ୍ତି ତାହା ତାଙ୍କ ଇଚ୍ଛାର କଥା । ଉପରେ ଦେଖିଲ ଯେ ୧୦ ଫୁଟ ପାଇଁ ଏକ ଇଞ୍ଚ ବା ଅଧ ଇଞ୍ଚ ଗାର ନକ୍ସାରେ ଟାଣି ପାରିବ । ବଡ଼ ଗ୍ରାମ, ସହର ଓ ଦେଶର ନକ୍ସାରେ ଇଚ୍ଛା ଅନୁସାରେ ୬, ୧୦, ୫୦ ମାଇଲ୍ ପାଇଁ ଏକ ଇଞ୍ଚ ବା ଅଧ ଇଞ୍ଚେ ଗାର ଟାଣନ୍ତି । ସବୁ ନକ୍ସାରେ ତହିଁର କେତେ ମାପକୁ ଭୂମିର ପ୍ରକୃତ କେତେ, ଅର୍ଥାତ୍ ତହିଁର ସ୍କେଲ୍ ଲେଖା ଥାଏ । ତାହା ପ୍ରଥମେ ନ ଦେଖି ନକ୍ସା ଖାଲି ଦେଖି ଭୂମିର ମାପ ଜାଣି ପାରିବ ନାହିଁ ।

ସ୍କେଲର ଆଉ ଗୋଟିଏ ଅର୍ଥ ଅଛି । ଯେଉଁ ଯନ୍ତ୍ରଦ୍ୱାରା ନକ୍ସାର ମାପ କରିବାକୁ ହୁଏ ତାହାର ନାମ ମଧ୍ୟ ସ୍କେଲ୍ । ପାର୍ଶ୍ୱରେ ତହିଁର ଚିତ୍ର ଦେଖ

ତଳେ ତୁମ୍ଭ ଭାଇଙ୍କ ସ୍କୁଲର ନକ୍ସା ଦିଆଗଲା । ପ୍ରଥମେ ତହିଁର ସ୍କେଲ୍ ପଢ଼ ; ନକ୍ସାର ଲମ୍ବାକୁ ସ୍କେଲ୍ ଯନ୍ତ୍ରଦ୍ୱାରା ମାପ ।



ସ୍କେଲ

୦ ୫ ୧୦ ୨୦ ୩୦ ଫୁଟ

---

## ୪ର୍ଥ ପାଠ ।

ତୁମ୍ଭ ସ୍କୁଲର ନକ୍ସା ଯେମନ୍ତ କାଟିଲ ଓ ଭାଇଙ୍କ ସ୍କୁଲର ନକ୍ସା ଦେଖି ସବୁ ଜାଣିଲ ତେମନ୍ତ ନିଜ ଗ୍ରାମର ନକ୍ସା କରି ପାରିବ ଓ ଅନ୍ୟ ଗ୍ରାମର ନକ୍ସା ଦେଖି କେତେ କଥା ଜାଣି ପାରିବ । ଗ୍ରାମ, ସହର, ବା ତହୁଁ ଅଧିକ ବଡ଼ ସ୍ଥାନର ନକ୍ସାକୁ ମାନଚିତ୍ର ବୋଲନ୍ତି । ଅପର ପୃଷ୍ଠାରେ ଗୋଟିଏ ଗ୍ରାମର ମାନଚିତ୍ର ଦେଖ । ତାହା କିପରି ସ୍କେଲରେ ହୋଇଅଛି ଦେଖ । ଘର ପରି ଚିହ୍ନ ଯେଉଁ ଠାରେ ଅଛି ସେଗୁଡ଼ିକ ଗ୍ରାମ-

ବାସିମାନଙ୍କର ଘର ; ଦୋହରି ଗାର ଚିହ୍ନ ଯେଉଁଠାରେ ଅଛି ସେ ରାସ୍ତା, ନୀଳବର୍ଣ୍ଣ ଚିହ୍ନ ଯେଉଁଠାରେ ଅଛି ତାହା ଜଳ ବୋଲି ଜାଣିବ ।




ସେପରି ଚିହ୍ନମାନ କାହିଁକି ଦିଅନ୍ତି କହି ପାରିବକି? ତୁମ୍ଭେ ଜାଣ ଯେ କାଗଜରେ ସ୍ଥାନ ହେବ ନାହିଁ ବୋଲି ନକ୍ସା ବା ମାନଚିତ୍ର ତିଆରି କରିବା ପାଇଁ ସ୍କେଲ୍ ନିର୍ଦ୍ଦିଷ୍ଟ କରିବାକୁ ହୁଏ । ଘର, ନଦୀ, ପୋଖରୀ, ରାସ୍ତା ଇତ୍ୟାଦି ବାସ୍ତବ ଯେମନ୍ତ, ନକ୍ସା ବା ମାନଚିତ୍ରରେ ତେମନ୍ତ ଲେଖିଲେ ସ୍ଥାନ ହେବ ନାହିଁ । ଏହି ଗ୍ରାମର ମାନଚିତ୍ରରେ ଯଦି ଜଣ-କର ଘର ଅଙ୍କନ କରିବ ତେବେ ସୁଦ୍ଧା ସ୍ଥାନ ହେବ ନାହିଁ ; ଅଉ ଘରଗୁଡ଼ିକର କଥାତ ଛାଡ଼ିଦିଅ । ସେଥିପାଇଁ ମାନଚିତ୍ର ଦେଖି

କେଉଁ ଠାରେ ନଦୀ, ପର୍ବତ ଇତ୍ୟାଦି ଅଛି ଜାଣିବା ନିମିତ୍ତ ସେହି ଚିହ୍ନ-ଗୁଡ଼ିକ ଦିଅନ୍ତୁ ।

ବର୍ତ୍ତମାନ ଏହି ମାନଚିତ୍ର ଦେଖି କେତେ ଗୁଡ଼ିଏ ପ୍ରଶ୍ନର ଉତ୍ତର କର:

ଗ୍ରାମର ରାସ୍ତା କେଉଁ ଦିଗରୁ କେଉଁ ଦିଗକୁ ଯାଇ ଅଛି? ରାସ୍ତାର କେଉଁ ଆଡ଼େ ଓ କେତେ ଦୂରରେ ସ୍କୁଲ, ଡାକଘର ଓ ଠାକୁର ମନ୍ଦିର? ଯେଉଁ ପୋଖରୀଟି ଦେଖୁଅଛ ତାହା ସ୍କୁଲର କେଉଁ ଆଡ଼େ ଓ କେତେଦୂର? ତହିଁର ଲମ୍ବ ଓ ଓସାର କେତେ? ମାନଚିତ୍ର ଦେଖି ନଈଟି କେତେ ଓସାର ବୋଲି ଜାଣୁଅଛ? ତାହା କେଉଁ ଦିଗରୁ ବହି ଆସିଅଛି? ବିଲଗୁଡ଼ିକ ରାସ୍ତାର କେଉଁ ଆଡ଼େ? ଗ୍ରାମର ମାପ ଉତ୍ତର ଦକ୍ଷିଣରେ ଓ ପୂର୍ବ ପଶ୍ଚିମରେ କେତେ? ତୁମ୍ଭ ସ୍କୁଲଘରର କେତେଗୁଣ?

ତୁମ୍ଭ ଗ୍ରାମର କେତେ ଅଂଶରେ ମନୁଷ୍ୟମାନେ ଘର କରି ଅଛନ୍ତି ଓ କେତେ ଅଂଶ କେବଳ ବିଲ, ନଈ, ପୋଖରୀ ଓ ଗୋଚର ପଡ଼ିଆ ଓ କେଉଁ ଆଡ଼ ଢିପ ବା ଖାଲ ତାହା ଶିକ୍ଷା କର । ଶିକ୍ଷକ, ପିତା ବା ଖୁଡ଼ୁ-ତାଙ୍କୁ ପଚାରିଲେ ତୁମ୍ଭ ଗ୍ରାମରେ କେତେ ଲୋକ, କି ଜାତି, ବ୍ରାହ୍ମଣ, କରଣ, ଚଷା, ବଢ଼େଇ, କମାର, ମୁସଲମାନ ବା ଖ୍ରୀଷ୍ଟିୟାନ କେତେ ଅଛନ୍ତି ଜାଣି ପାରିବ । ତୁମ୍ଭେ ପ୍ରତିଦିନ ଯାହା ଖାଅ, ପିନ୍ଧ, ଘୋଡ଼େଇ ହୁଅ ବା ଲଗାଅ ସେମାନ ନିଜ ଗ୍ରାମରେ ହୁଏ କି ଆଉ କେଉଁଠାରୁ ଆସି ଗ୍ରାମ ଦୋକାନରେ ବିକ୍ରୟ ହୁଏ ତାହା ଶିକ୍ଷା କର ।

---

## ୫ମ ପାଠ ।

ତୁମ୍ଭର ଯେମନ୍ତ ଗୋଟିଏ ଗ୍ରାମରେ ଘର, ମାମୁଙ୍କର ମଧ୍ୟ ଆଉ ଗୋଟିଏ ଗ୍ରାମରେ ଘର; ମଉସା ପିଉସାଙ୍କ ଘର ମଧ୍ୟ ଅନ୍ୟ୨ ଗ୍ରାମରେ ହୋଇଥିବ ।

ଏହିରୂପେ ଅନେକ ଗ୍ରାମ ଅଛି । କେହି ଅବା ତୁମ୍ଭ ଗ୍ରାମଠାରୁ ୫, କେହି ଅବା ୧୦, କେହି ଅବା ୧୦୦ ମାଇଲ୍ ଦୂର ହେବ । କେଉଁଠାକୁ ବଳଦ ଗାଡ଼ୀ ଯିବାର ବାଟ ବା ପକ୍କା ରାସ୍ତା ଅଛି; କେଉଁ ଗ୍ରାମକୁ ମାଟି ସଡ଼କ ଅଛି; କେଉଁ ଗ୍ରାମକୁ ଗାଡ଼ୀ ଯିବାର ବାଟ ନାହିଁ ଚାଲି କରି ବା ଘୁଅରରେ ଯିବାକୁ ହୁଏ; କେଉଁ ଗ୍ରାମକୁ ଅବା ରେଲଗାଡ଼ୀ, ନୌକା, ଜାହାଜ ଆଦିରେ ଯିବାକୁ ହୁଏ ।

ଏତେଗୁଡ଼ିଏ ଗ୍ରାମର ଭଲ ମନ୍ଦ କିପରି ବୁଝାଯାଏ? ତୁମ୍ଭ ଗ୍ରାମରେ କେହି କାହାରିକୁ ମାଡ଼ ମାରିଲେ, କାହାରି ଘରୁ ଚୋରି କଲେ ଅବା ବିଲରୁ ଧାନ କାଟି ନେଲେ ଚଉକୀଦାରକୁ କହିବାକୁ ହୁଏ । ନିକଟ-ବର୍ତ୍ତୀ ଦୁଇ ତିନ ଖଣ୍ଡ ଗ୍ରାମ ବା ଗୋଟିଏ ବଡ଼ ଗ୍ରାମରେ ଜଣେ ଚଉକୀ-ଦାର ଥାଏ; ୭ କି ୭ ଜଣ ଚଉକୀଦାରଙ୍କ ଉପରେ ଜଣେ ଦଫାଦାର ଥାଏ ଏବଂ ଦଫାଦାରମାନେ ଗୋଟିଏ ଫାଣ୍ଡିର ଅଧୀନ ହୋଇଥାନ୍ତି । ପୁଣି ୪ କି ୫ ଟି ବା ଅଧିକ ଫାଣ୍ଡି ଘେନି ଗୋଟିଏ ଥାନା ହୁଏ । ଗ୍ରାମର ଚଉକୀଦାର ଦଫାଦାରକୁ ଜଣାଏ, ଦଫାଦାର ଯାଇ ଫାଣ୍ଡିରେ କହେ, ସେଠାରୁ ଜମାଦାର ଆସି ଗ୍ରାମରେ ବୁଝା ସୁଝା କରି ଉଚିତ ବିଚାରିଲେ ଦୋଷୀକୁ ହାକିମଙ୍କ ନିକଟକୁ ପଠାଇ ଦିଅନ୍ତି । ବିଚାରର ସୁବିଧା ପାଇଁ ଗ୍ରାମମାନ କେତେଗୁଡ଼ିଏ ଫାଣ୍ଡି ଓ ଥାନାର ଅନ୍ତର୍ଗତ ହୋଇଅଛି । ତୁମ୍ଭ ଗ୍ରାମ କେଉଁ ଫାଣ୍ଡି ଓ ସେ ଫାଣ୍ଡି କେଉଁ ଥାନାରେ ଯାଏ ଶିକ୍ଷକଙ୍କଠାରୁ ଶିକ୍ଷା କର ।

ଘରେ ଲାଟବନ୍ଦି କଥା ଶୁଣିଥିବ । ଲାଟବନ୍ଦି ବେଳେ ଖଜଣା ଓସୁଲ ହୁଏ । ଯେଉଁ ଜମିରେ ତୁମ୍ଭର ଘର ହୋଇଅଛି, ଯେଉଁ ଜମିରେ ତୁମ୍ଭେ ଶାଗ, ରବି, ଧାନ କରି ଖାଅ ସେଥିପାଇଁ ଜମିଦାର ଟଙ୍କା ନିଅନ୍ତି । ସେହି ଟଙ୍କାକୁ ଖଜଣା ବୋଲନ୍ତି । ଖଜଣା ଓସୁଲ ହେବାର ସୁବିଧା ନିମନ୍ତେ ଗୋଟିଏ ବଡ଼ ଗ୍ରାମ ବା ଦୁଇ ତିନୋଟି କ୍ଷୁଦ୍ର ଗ୍ରାମକୁ ମୌଜା

ବୋଲନ୍ତି; ପୁଣି ୫ । ୭ ଟି ବା ଅଧିକ ମୌଜା ନିକଟବର୍ତ୍ତୀ ହେଲେ ସେ ସବୁଗୁଡ଼ିକୁ ଏକ ପ୍ରଗଣା ବୋଲନ୍ତି । ତୁମ୍ଭ ଗ୍ରାମ କେଉଁ ମୌଜା ଓ ସେ ମୌଜା କେଉଁ ପ୍ରଗଣାରେ ଯାଏ ଶିକ୍ଷକଙ୍କଠାରୁ ଶିକ୍ଷା କର ।

ତିନ ଚାରୋଟି ବା ଅଧିକ ଥାନା ଓ ଅନେକଗୁଡ଼ିଏ ପ୍ରଗଣା ଯେନି ସବ୍‌ଡିଭିଜନ ଗଠିତ ହୁଏ ଏବଂ ଦୁଇ ଚାରୋଟି ବା ଅଧିକ ସବ୍‌ଡିଭିଜନ ଯେନି ଏକ ଜିଲ୍ଲା ଗଠିତ ହୁଏ । ତୁମ୍ଭ ଗ୍ରାମ କେଉଁ ସବ୍‌ଡିଭିଜନ ଓ କେଉଁ ଜିଲ୍ଲାରେ ଯାଏ ।

ଆମ୍ଭମାନଙ୍କର ମଙ୍ଗଳ ପାଇଁ ଦୟାଳୁ ମହାମାନ୍ୟ ସରକାରବାହାଦୁର ଏହି ବିଭାଗମାନ କରିଅଛନ୍ତି ।

---

## ୭ମ ପାଠ ।

ମନେ କର, ତୁମ୍ଭ ଘର ପୁରୀ ଜିଲ୍ଲାରେ ଓ ଖୋରଧା ସବ୍‌ଡିଭିଜନରେ ଅଛି । ଯଦି କେହି ପଚାରେ ପୁରୀ ଜିଲ୍ଲା କେଉଁଠାରେ, ତେବେ କଅଣ ବୋଲିବ ?

ଆଚ୍ଛା, ତୁମ୍ଭ ଗ୍ରାମର ସ୍କୁଲଘର କେଉଁଠାରେ ପଚାରିଲେ କଅଣ ବୋଲନ୍ତି? ତାହାର ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମରେ କଅଣ ଅଛି କହିଲେ ବୁଝାପଡ଼ନ୍ତା । ସେହିପରି ପୁରୀ ଜିଲ୍ଲାର ଚାରି ଦିଗରେ କଅଣ ଅଛି କହି-ବାର ଆବଶ୍ୟକ ।

ଅପର ପୃଷ୍ଠାରେ ପୁରୀ ଜିଲ୍ଲାର ମାନଚିତ୍ର ଅଛି । ତାହା ଦେଖିଲେ ଜଣାଯିବ ଯେ ଉତ୍ତର ଦିଗରେ ପୁରୀ ଜିଲ୍ଲା ଯେଉଁଠାରେ ଶେଷ, କଟକ ଜିଲ୍ଲା ସେହିଠାରେ ଆରମ୍ଭ ହୋଇଅଛି; ଦକ୍ଷିଣରେ କେତେକ ଅଂଶରେ ସମୁଦ୍ର ଓ ବାକି ଅଂଶରେ ଗଞ୍ଜାମ ଜିଲ୍ଲା; ପୂର୍ବରେ କେତେକ ଅଂଶରେ ସମୁଦ୍ର ଓ ବାକି ଅଂଶରେ କଟକ ଜିଲ୍ଲା; ଏବଂ ପଶ୍ଚିମରେ ଘୁମୁସର, ରଣପୁର, ନୟାଗଡ଼ ଓ ଖଣ୍ଡପଡ଼ା ।



ପୁରୀ ଜିଲ୍ଲାର ମାନଚିତ୍ର ।

ମାନଚିତ୍ରର ଏକ କୋଣରେ ସ୍କେଲ୍ ଲେଖାଅଛି । ତାହା ପଢ଼ି ସ୍କେଲ ଯନ୍ତ୍ର ଲଗାଇଲେ ଜଣାଯିବ ଯେ ଏହି ଜିଲ୍ଲା ଉତ୍ତରରୁ ଦକ୍ଷିଣକୁ ପ୍ରାୟ ୯୦ ମାଇଲ୍, ଅର୍ଥାତ୍ ଏମୁଣ୍ଡରୁ ସେମୁଣ୍ଡକୁ ଯିବା ପାଇଁ ୫ ଦିନ ଲାଗିବ । ପୂର୍ବରୁ ପଶ୍ଚିମକୁ ପ୍ରାୟ ୮୦ ମାଇଲ୍, ଅର୍ଥାତ୍ ୪ ଦିନ ଲାଗିବ । ଏହାର ପରିମାଣ ୨୪୭୩ ବର୍ଗମାଇଲ୍ ।

ଦଶ ବର୍ଷରେ ଥରେ ଲେଖାଏଁ ସରକାରବାହାଦୁର ମନୁଷ୍ୟମାନଙ୍କୁ ଗଣନ୍ତି । ଆଠ ବର୍ଷ ହେଲା ୧୯୦୦ ମସିହାର ଲୋକସଂଖ୍ୟା ହୋଇଥିଲା ; ତହିଁରେ ସ୍ଥିର ହୋଇଅଛି ଯେ ପୁରୀ ଜିଲ୍ଲାରେ ପ୍ରାୟ ୯ ଲକ୍ଷ ଲୋକ ଅଛନ୍ତି ।

ଏଥିରୁ ସରକାରବାହାଦୁର ଚାରି ଲକ୍ଷରୁ ଅଧିକ ଟଙ୍କା ଖଜଣା ନିଅନ୍ତି । ଏହା ଦିଓଟି ସବ୍‌ଡିଭିଜନରେ ବିଭକ୍ତ ; (୧) ପୂର୍ବଭାଗରେ ପୁରୀ ଓ (୨) ପଶ୍ଚିମ ଭାଗରେ ଖୋରଧା । ପୁରୀ ସବ୍‌ଡିଭିଜନରେ ୨୫ ଟି ଓ ଖୋରଧା ସବ୍‌ଡିଭିଜନରେ ୧୧ ଟି ପ୍ରଗଣା ଅଛି ଓ ତହିଁରୁ କେତେଗୁଡ଼ିକୁ କିଲ୍ଲା ବୋଲିଯାଏ । ନିଜେ ସରକାରବାହାଦୁର ଖୋରଧାର ଜମିଦାର ଅଟନ୍ତି । ଜଣେ ତହସିଲଦାର ଖଜଣା ଓସୁଲ କରନ୍ତି । ରୟତମାନଙ୍କଠାରୁ ସରବରାକାରମାନେ ଓସୁଲ କରି ତହସିଲଦାରଙ୍କୁ ଦିଅନ୍ତି । ଏଥିପାଇଁ ଏହାକୁ ଖାସ୍‌ମାହାଲ ବୋଲନ୍ତି । କିନ୍ତୁ ପୁରୀ ସବ୍‌ଡିଭିଜନରେ ଦେଶୀୟ ଲୋକମାନେ ଜମିଦାର ଅଟନ୍ତି ।

ଏ ଜିଲ୍ଲାରେ ୫ ଟି ଥାନା ଅଛି ; ପୁରୀ ସବ୍‌ଡିଭିଜନରେ ୩ ଟି ଓ ଖୋରଧାରେ ୨ ଟି । ଜିଲ୍ଲାର ଦକ୍ଷିଣଭାଗରେ ପୁରୀଥାନା ; ତହିଁର ପୂର୍ବଭାଗରେ ଗୋପ ; ଗୋପ ଓ ପୁରୀ ଥାନାର ଉତ୍ତରରେ ପିପିଲି ଥାନା ; ପିପିଲିର ପଶ୍ଚିମ ଦିଗରେ ଖୋରଧା ଥାନା ଓ ତହିଁର ଦକ୍ଷିଣପଶ୍ଚିମରେ ବାଣପୁର ଥାନା ।

ପୂର୍ବଭାଗରେ ସମୁଦ୍ର ଥିବା ଯୋଗେ ଅଧିକାଂଶ ଭୂମି କେବଳ

ବାଲିରେ ପୂର୍ଣ୍ଣ ଥାଏ ; ତହିଁରେ ବିଶେଷ ଶସ୍ୟ ଉତ୍ପନ୍ନ ହୋଇପାରେ ନାହିଁ । ପୂର୍ବେ ସମୁଦ୍ର କୂଳରେ ହରିଣପୁର, ଅସ୍ତରଙ୍ଗ ପ୍ରଭୃତି ସ୍ଥାନରେ ଲୁଣ ପୋକ୍ତାନ କରି ଲୋକେ ବହୁତ ଟଙ୍କା ପାଉଥିଲେ । ଏବେ ତାହା ବନ୍ଦ ହୋଇଗଲାଣି ।

ପଶ୍ଚିମ ଅଞ୍ଚଳ ଖୋରଧା ଓ ବାଣପୁର ବିଭାଗରେ ପାହାଡ଼, ପର୍ବତ, ଟାଙ୍ଗି, ମୁଣ୍ଡିଆ ଅନେକ ଅଛି । ସାଧାରଣତଃ ଭୂମି ପଥୁରିଆ ଏବଂ ସେହି କାରଣରୁ ଅନେକ ସ୍ଥାନରେ କୌଣସି ପ୍ରକାର ଶସ୍ୟ ହୁଏ ନାହିଁ । ଅନେକ ସ୍ଥଳରେ ଝରମାନ ଅଛି, ତହିଁରୁ ଜଳ ବରାବର ଝରୁଥାଏ ଏବଂ ଭୂମିକୁ ଶସ୍ୟଶାଳୀ କରେ । ଖୋରଧା ସବ୍‌ଡିବିଜନ କଚେରୀର ନିକଟ ମିଁଶ୍ମନ ପାଟଣା ପ୍ରଭୃତି ଗ୍ରାମରେ ଝରଯୋଗେ ଅଧିକ ଧାନ ହୁଏ ।

ଉପରୋକ୍ତ ଦୁଇ ଅଞ୍ଚଳର ମଧ୍ୟବର୍ତ୍ତୀ ବିଭାଗ ଲିମ୍ବାଇ, ରାହାଙ୍ଗ, କୋଠଦେଶ ଇତ୍ୟାଦି ପ୍ରଗଣାମାନ ସର୍ବାପେକ୍ଷା ଉର୍ବରତମ । ଧାନ୍ୟ ପ୍ରଧାନ ଶସ୍ୟ ; ଲୋକଙ୍କର ହେଳା ଯୋଗେ ଅନ୍ୟ ଶସ୍ୟମାନ ବିଶେଷ ହୁଏ ନାହିଁ । ପୁରୀ ସବ୍‌ଡିବିଜନରେ ବହୁସଂଖ୍ୟକ ନଡ଼ିଆଗଛ ଅଛି ଓ ନଡ଼ିଆର କାରବାର ହୁଏ । ରେଲ ହେଲା ଦିନୁଁ ମହାଜନମାନେ ନଡ଼ିଆ ଘେନି ଦୂର ପ୍ରଦେଶରେ ବିକ୍ରୟ କରି ଲାଭବାନ୍ ହେଉଅଛନ୍ତି । ନଡ଼ିଆ ତେଲ ଓ କତା ମଧ୍ୟ ବିକ୍ରୟ ହୁଏ । ଏ ଅଞ୍ଚଳରେ ପୁନାଙ୍ଗ ଗଛ ପ୍ରଚୁର ପରିମାଣରେ ଦେଖାଯାଏ ; ତହିଁର ଫଳରୁ ଏକପ୍ରକାର ତେଲ ବାହାରେ ଓ ତାହା ଦୀପରେ ଜଳେ ।

ମଫସଲର ସବୁ ଗ୍ରାମରେ ସବୁ ପଦାର୍ଥ ମିଳେ ନାହିଁ । ଲୋକଙ୍କର କିଣାବିକାର ସୁବିଧା ପାଇଁ ବହୁ କାଳରୁ ସ୍ଥାନେ ୨ ହାଟମାନ ଅଛି । ସପ୍ତାହରେ ଦୁଇଦିନ ଲେଖାଏ ହାଟ ବସେ ; ଭିନ୍ନ ୨ ଗ୍ରାମର ବେପାରୀମାନେ ଦୋକାନ ବସାନ୍ତି । ପୁରୀ ଜିଲାରେ ଅନେକଗୁଡ଼ିଏ ହାଟ ଅଛି ; ତହିଁ ମଧ୍ୟରେ ନିମାପଡ଼ା, ଛଣଗିରି, ଗବକୁଣ୍ଡ, ଖିଲଅବାଢ଼ୀ ଓ ବଳଙ୍ଗା ପ୍ରଧାନ

ଅଟେ । ମାନଚିତ୍ରରେ ଏଗୁଡ଼ିକ ଦେଖ । ତୁମ୍ଭ ଘରଠାରୁ କେତେ ଦୂର ଓ କେଉଁ ଆଡ଼େ ?

ସମୁଦ୍ର ଉପକୂଳରେ ପୁରୀ ସହର ଗ୍ରୀଷ୍ମକାଳରେ ସ୍ୱାସ୍ଥ୍ୟକର ହୁଏ ଏବଂ ଶୀତଳପବନ ଯୋଗେ କଷ୍ଟ ବୋଧ ହୁଏ ନାହିଁ । ଏ ଜିଲ୍ଲା ମଧ୍ୟରେ ଖୋରଧା ସବ୍‌ଡିବିଜନର ଜଳବାୟୁ ଉତ୍କୃଷ୍ଟ ଅଟେ ; ଚିଲିକା କୂଳବର୍ତ୍ତୀ ସ୍ଥାନମାନ ଅସ୍ୱାସ୍ଥ୍ୟକର ।

---

## ୭ମ ପାଠ ।

ମାନଚିତ୍ରରେ ସକଳ ଅଞ୍ଚଳ ସମାନ ପରି ଦିଶୁଅଛି ; କିନ୍ତୁ ପ୍ରକୃତରେ ତାହା ନୁହେଁ । କେତେକ ଅଂଶ ଢିପ ବା ଉଚ୍ଚ ଓ ଅନ୍ୟ ଅଂଶ ଖାଲ ବା ନୀଚ । ସେହି ଉଚ୍ଚତା ଓ ନୀଚତା କାଗଜରେ ଦେଖାଇବାର ସୁବିଧା ନାହିଁ । ଜିଲ୍ଲାଯାକ ବୁଲିଆସିଲେ ମଧ୍ୟ ଜାଣିବା ସହଜ ନୁହେ ; ତାହା ଖାଲି ଆଖିକି ଦିଶେ ନାହିଁ ।

ପାଣି ଢାଳିଦେଲେ ଅବା ବର୍ଷା ହେଲେ କେଉଁ ଆଡ଼କୁ ବହି-ଯାଏ ? ଢିପ ଆଡ଼କୁ ଯାଏ କି ? ନାହିଁ, ଯେଉଁ ଆଡ଼ ଖାଲ ଥାଏ ସେହି ଆଡ଼କୁ ଆପେ ବହିଯାଏ । ତେବେ ଜଣାଯାଉଅଛି ଯେ ପାଣି ଯେଉଁ ଆଡୁ ବହି ଆସେ ତାହା ଉଚ୍ଚ ଓ ଯେଉଁ ଆଡ଼େ ବହିଯାଏ ତାହା ନୀଚ । ଆଉ ମଧ୍ୟ ଯେଉଁ ଅଞ୍ଚଳରେ ପାହାଡ଼ ପର୍ବତ ଅଛି ତାହା ପାହାଡ଼ ପର୍ବତ ନ ଥିଲା ଅଞ୍ଚଳରୁ ଉଚ୍ଚତର ବୋଲିବାକୁ ହେବ ।

ମାନଚିତ୍ରରେ କେଉଁ ଆଡ଼େ ଅଧିକ ପାହାଡ଼ ପର୍ବତର ଚିହ୍ନ ଦେଖୁ-ଅଛ ? ଖୋରଧା ଓ ବାଣପୁର ଅଞ୍ଚଳରେ ଅନେକଗୁଡ଼ିଏ କ୍ଷୁଦ୍ର ପାହାଡ଼ ଅଛି । ତହିଁ ମଧ୍ୟରେ ଖଣ୍ଡଗିରି, ବରୁଣେଇ ଓ ବେଲେଶ୍ୱର ପ୍ରଧାନ ଅଟେ ।

ପୁରୀଠାରୁ ରେଲଗାଡ଼ୀରେ କଟକ ଗଲେ ବାଟରେ ଭୁବନେଶ୍ୱର ଷ୍ଟେଶନ ନିକଟରେ ଯାହା ଉଚ୍ଚ ସବୁଜବର୍ଣ୍ଣ କାନ୍ଥପରି ଦିଶେ ତାହା ଖଣ୍ଡଗିରି ପାହାଡ଼ । ନିକଟକୁ ଗଲେ ଦେଖିବ ଭୂମି ଉପରକୁ ଉଠି ଠିଆ ହୋଇଅଛି ; ବଡ଼ ୨ ପଥର ଗଡ଼ିଆଡ଼େ ଘେରି ରହିଅଛି, ମାଟି ମଧ୍ୟ ଅଛି ଏବଂ ତହିଁରେ ନାନାପ୍ରକାର ଗଛ, ଲତା ହେଉଥିବାରୁ ବର୍ଣ୍ଣ ସବୁଜ ଦିଶେ । ଉପରକୁ ଯିବାର ବାଟ ଅଛି ; ସେଠାରେ ଦେଖିବ କେଉଁ କାଳରୁ ଗୁମ୍ଫାମାନ ଅଛି । ଗୁମ୍ଫା କ'ଣ ? ପାହାଡ଼ କଟା ହୋଇ ବଡ଼ ୨ ଏକ ମହଲା, ଦୋମହଲା ପକ୍କା ଘର ପରି ହୋଇଅଛି ; ତାହାକୁ ଗୁମ୍ଫା ବୋଲନ୍ତି । କୋଠାରେ ଯେମନ୍ତ କଡ଼ି, ବରଗା, ଦ୍ୱାର, କବାଟ ହେଉଥାଏ ଏଥିରେ ତାହା ନାହିଁ । ଏଠାରେ ରାଣୀହଂସପୁର ଦେଖିବାକୁ ଅତି ମନୋହର । ସବୁଠାରୁ ଉଚ୍ଚ ସ୍ଥାନକୁ ଯାଇ ଚାହିଁଲେ ବହୁ ଦୂର ପର୍ଯ୍ୟନ୍ତ ଗ୍ରାମମାନ ଦିଶେ ଏବଂ ବଡ଼ ୨ ଘରମାନ ଅତି କ୍ଷୁଦ୍ର ବିନ୍ଦୁ ପରି ଓ ଭୂମିରେ ମିଶିଥିଲା ପରି ବୋଧ ହୁଏ । ପାହାଡ଼ ବା ପର୍ବତର ଉଚ୍ଚତମ ସ୍ଥାନକୁ ଶୃଙ୍ଗ ବୋଲନ୍ତି ।

ଖଣ୍ଡଗିରିର ଅତି ନିକଟରେ ଉଦୟଗିରି ଏବଂ ସେହିଠାରୁ ପ୍ରାୟ ଦିନକର ବାଟ ଦକ୍ଷିଣ ଦିଗରେ ଧୌଳିଗିରି ଦୟାନଦୀ କୂଳରେ ଅଛି । ତିନି ପର୍ବତରେ ବୌଦ୍ଧମାନଙ୍କର କୀର୍ତ୍ତି ଅଛି ।

ବରୁଣେଇ ପାହାଡ଼ ଖୋରଧା ସବ୍‌ଡିବିଜନ କଚେରୀଠାରୁ ପ୍ରାୟ ୫ ମାଇଲ ଦକ୍ଷିଣ ଦିଗରେ । ଏହା ଖଣ୍ଡଗିରିଠାରୁ ଉଚ୍ଚତର ଏବଂ ଜଙ୍ଗଲରେ ଆବୃତ । ବାଘ, ଭାଲୁ ପ୍ରଭୃତି ଜନ୍ତୁ ଏଠାରେ ଥାନ୍ତି । ବାରୁଣୀ ଦେବୀଙ୍କର ଗୋଟିଏ ସାମାନ୍ୟ ମନ୍ଦିର ଅଛି ବୋଲି ପାହାଡ଼ର ନାମ ବରୁଣେଇ ହୋଇଅଛି । ଲୋକେ ବରୁଣେଇ ଠାକୁରାଣୀ ବୋଲି ଡାକନ୍ତି । ଭଇ ସଂକ୍ରାନ୍ତି ଦିନ ମହୋତ୍ସବ ମେଳା ହୁଏ, ଅନେକ କୀର୍ତ୍ତନ ସମ୍ପ୍ରଦାୟ ଓ ଦୂର ଗ୍ରାମରୁ ସ୍ତ୍ରୀ ପୁରୁଷ ବାଳକମାନେ ଆସନ୍ତି ; ନାନାପ୍ରକାର

ପଦାର୍ଥର ଦୋକାନ ବସେ ଓ କିଣାବିକା ହୁଏ । ଏହାର ଶୃଙ୍ଗକୁ ପାଣ୍ଡବଘର ବୋଲନ୍ତି । ଲୋକେ କହନ୍ତି ଏ ସ୍ଥାନରେ ପାଣ୍ଡବମାନେ କିଛିଦିନ ରହିଥିଲେ ବୋଲି ଏହାର ନାମ ପାଣ୍ଡବଘର ହୋଇଅଛି । ବାରୁଣୀ ଦେବୀଙ୍କ ପଥର ମୂର୍ତ୍ତିର ନାଭିରୁ ଗୋଟିଏ ଝରରେ ପାଣି ସର୍ବଦା ବହୁଅଛି । ସେ ପାଣି ଅତି ପରିଷ୍କାର । ଠାକୁରାଣୀଙ୍କ ଅସ୍ଥାନ ପର୍ଯ୍ୟନ୍ତ ବହୁକାଳରୁ ଲୋକଙ୍କ ଯିବା ଆସିବା କରୁଥିବାରୁ ଗୋଟିଏ ଅତି ସରୁ ବାଟ ଅଛି ; ତାହାର ଦୁଇ ପାଖରେ ଜଙ୍ଗଲ ।

ଖୋରଧା ସବ୍‌ଡିବିଜନର ବାଣପୁର ବିଭାଗରେ ବେଲୋର ସାଲୋର ପାହାଡ଼ ଅଛି । ତାହା ବରୁଣେଇଠାରୁ ଉଚ୍ଚତର ଏବଂ ଘୋର ଜଙ୍ଗଲରେ ଆବୃତ ଓ ହିଂସ୍ର ଜନ୍ତୁରେ ପରିପୂର୍ଣ୍ଣ । ତାହାର ଶୃଙ୍ଗକୁ ଯିବାକୁ ବାଟ ନାହିଁ କି କେହି ଯାନ୍ତି ନାହିଁ ।

ଏବେ ପର୍ବତ କଅଣ ଜାଣିଲ ? ପଥର ଓ ମାଟିର ଢିପ ବହୁଦୂର ବିସ୍ତୃତ ଓ ବିଶେଷ ଉଚ୍ଚ ହୋଇ ଜଙ୍ଗଲରେ ଆବୃତ ହେଲେ ତାହାକୁ ପର୍ବତ ବୋଲନ୍ତି । କ୍ଷୁଦ୍ର ପର୍ବତକୁ ପାହାଡ଼ ବା ମୁଣ୍ଡିଆ ବୋଲନ୍ତି ।

ପୁରୀ ଜିଲ୍ଲାରେ ଅନେକ କ୍ଷୁଦ୍ର ନଦୀ ଥିଲେହେଁ ଗୋଟିଏ ସୁଦ୍ଧା ପ୍ରଧାନ ନଦୀ ନାହିଁ । ତହିଁ ମଧ୍ୟରେ କୁଶଭଦ୍ରା, ଦୟା ଓ ଭାର୍ଗବୀ ସବୁଠାରୁ ବଡ଼ । କୁଆଖାଇ ବୋଲି ଗୋଟିଏ କ୍ଷୁଦ୍ର ନଦୀ ଉତ୍ତର ଦିଗରୁ ବହି ଆସି ବାଲିଅନ୍ତା ଗ୍ରାମଠାରେ ତାହା ଦେହରୁ ଆଉ ଗୋଟିଏ ଧାର ପୂର୍ବ-ଦକ୍ଷିଣ କୋଣରେ କୁଶଭଦ୍ରା ନାମରେ ବହିଯାଇ ସମୁଦ୍ରରେ ମିଶିଅଛି । ପୁଣି କିଛି ଦୂର ଯାଇଁ ସେହି ନଦୀ ବାଲକାଟି ଗ୍ରାମଠାରେ ଦୁଇ ଧାର ହୋଇଅଛି ; ଯେଉଁଟି ଦକ୍ଷିଣକୁ ବହି ଯାଇଅଛି ତାହା ଭାର୍ଗବୀ ଏବଂ ଯେଉଁଟି ଦକ୍ଷିଣ-ପଶ୍ଚିମ କୋଣରେ ବହି ଯାଇଅଛି ତାହା ଦୟାନଦୀ ଅଟେ । ଦୟା ଓ ଭାର୍ଗବୀ ଯାଇଁ ଚିଲିକାରେ ମିଶିଅଛି । କେବଳ ବର୍ଷା ଦିନରେ ଏଥିରେ ଜଳ ଥାଏ ଏବଂ ନୌକାରେ ପାର ହେବାକୁ ହୁଏ ; ଅନ୍ୟ ଦିନରେ

ଲୋକେ ପଶି ଯାନ୍ତି । ଗ୍ରୀଷ୍ମ କାଳରେ ଜଳ ନ ଥାଏ । ନଦୀଗୁଡ଼ିକ ଯେଉଁ ଆଡ଼ୁ ବହି ଆସିଅଛି ସେଆଡ଼ ଉଚ୍ଚ ବୋଲି ଜାଣିବ । ଅଚ୍ଛା, ମାନଚିତ୍ରରେ ଦେଖୁଅଛ ଯେ ସିଧାବାଟେ ନ ଯାଇ ନଦୀମାନ ବକ୍ରଭାବରେ ବହି ଯାଇଅଛି ; ତହିଁର କାରଣ କଅଣ ? ଯେଉଁଠାରେ ପଥର ବା ଉଚ୍ଚ ଭୂମି ଅଛି ସେ ପର୍ଯ୍ୟନ୍ତ ଆସି ନଦୀ ତାହା ଖୋଳି ଚାଲି ପାରେ ନାହିଁ କି ଡେଇଁ ଯାଇ ପାରେ ନାହିଁ ; ଯେଉଁଆଡ଼େ ନୀଚ ଓ କୋମଳ ଭୂମି ଥାଏ ସେହି ଆଡ଼କୁ ଖାଇଯାଏ । ଏହି କାରଣରୁ ନଦୀରେ ବାଙ୍କ ହୁଏ ।

---

## ୮ମ ପାଠ ।

ଖୋରଧା ଅପେକ୍ଷା ପୁରୀ ସବ୍‌ଡିବିଜନରେ ଅଧିକ ପୁଷ୍କରିଣୀମାନ ଅଛି । ପୁରୀ ସହର ମଧ୍ୟରେ ଶ୍ୱେତଗଙ୍ଗା, ଇନ୍ଦ୍ରଦ୍ୟୁମ୍ନ, ମାର୍କଣ୍ଡ ଓ ନରେନ୍ଦ୍ର ୪ଟି ପୁଷ୍କରିଣୀକୁ ହିନ୍ଦୁମାନେ ତୀର୍ଥ ବୋଲି ମାନନ୍ତି । ତହିଁ ମଧ୍ୟରେ ନରେନ୍ଦ୍ର ସବୁଠାରୁ ବଡ଼ । ଶତ ଶତ ଯାତ୍ରୀ ପ୍ରତ୍ୟହ ତହିଁରେ ସ୍ନାନ କରନ୍ତି । ଭୁବନେଶ୍ୱରଠାରେ ମନ୍ଦିର ନିକଟରେ ବିନ୍ଦୁସାଗର ବୋଲି ଗୋଟିଏ ବୃହତ୍ ପୁଷ୍କରିଣୀ ଅଛି ; ତୀର୍ଥ ବୋଲି ଯାତ୍ରୀମାନେ ସ୍ନାନ କରି ପବିତ୍ର ହୋଇ ମହାଦେବଙ୍କ ଦର୍ଶନ କରନ୍ତି ।

ଅତି ପୂର୍ବକାଳରେ ରାଜାମାନେ ସେଗୁଡ଼ିକ ଖୋଳାଇ ଥିଲେ । କେତେ ସ୍ଥାନରେ ଦେଖାଯାଏ ମନୁଷ୍ୟ ଖୋଳି ନ ଥିଲେହେଁ ଅତି ଦୀର୍ଘ ଓ ପ୍ରଶସ୍ତ ପୁଷ୍କରିଣୀମାନ ଅଛି । ଚାରିଆଡ଼େ ଭୂମି ବା ସ୍ଥଳ ଥିବାରୁ ସେଗୁଡ଼ିକୁ ପୁଷ୍କରିଣୀ ବୋଲନ୍ତି ; କିନ୍ତୁ ସେଗୁଡ଼ିକର ପ୍ରକୃତ ନାମ ହ୍ରଦ । ପୁରୀସହର ଠାରୁ ୫ ମାଇଲ ଉତ୍ତର ପୂର୍ବରେ ଗୋଟିଏ କ୍ଷୁଦ୍ର ହ୍ରଦ ଅଛି । ତାହାର ନାମ ସର । ଭାର୍ଗବୀ ନଦୀ ଦେହରୁ ଏକ ଧାର ବହିଯାଇ ସେହି ନୀଚସ୍ଥାନରେ ପଶିଅଛି ଏବଂ ସେ ଜଳ ବାହାରି ଯିବାର ବାଟ ନାହିଁ ।

ନଦୀର ସ୍ରୋତ ଭୂମିକୁ ଖୋଳି ଭାଙ୍ଗି ଯାଇ ନ ପାରିବାରୁ ବନ୍ଦ ହୋଇ ରହିଅଛି ।

ଆଉ ଗୋଟିଏ ପ୍ରଧାନ ହ୍ରଦ ଜିଲ୍ଲାର ଦକ୍ଷିଣ-ପଶ୍ଚିମ ସୀମାରେ ଅଛି ; ତାହାର ନାମ ଚିଲିକା । ଚତୁର୍ଦ୍ଦିଗରେ ସ୍ଥଳ ଅଛି ; କେବଳ ମାଣିକ-ପାଟଣାଠାରେ ତାହା ସମୁଦ୍ର ସଙ୍ଗେ ମିଶିଅଛି । ଏହାର ପାଣି ଲୁଣିଆ ଲାଗେ ଓ ଭିତରକୁ ଜୁଆର ଆସେ । ଜୁଆରବେଳେ ହ୍ରଦର ପାଣି ବଢ଼େ । ଚିଲିକାରେ କେଉଁ ନଦୀ ଆସି ମିଶିଅଛି? ଯେଉଁଠାରେ ନଦୀ ମିଶିଅଛି ସେଠାର ପାଣି ଲୁଣିଆ ନୁହେ । ଏହା ପ୍ରାୟ ୪୪ ମାଇଲ ଲମ୍ବା ଓ ୧୭ ମାଇଲ ଓସାର ହେବ । ପୂର୍ବେ ଏହା ଅତି ଗଭୀର ଥିଲା ଏବଂ ଅନେକ ବୋଇତ ବାଣିଜ୍ୟପାଇଁ ଆସୁଥିଲା ; କିନ୍ତୁ କ୍ରମଶଃ ଏହା ପୋତି ହୋଇ ଆସୁ-ଅଛି । ଜଳ ମଧ୍ୟରେ ଭେକ୍ଟା, ଖଙ୍ଗା ପ୍ରଭୃତି ନାନାପ୍ରକାର ମାଛ ଅଛନ୍ତି ଏବଂ କେଉଟମାନେ ବଡ଼ ବଡ଼ ଜାଲ ପକାଇ ଧରନ୍ତି ଓ ବିକ୍ରୟ କରନ୍ତି । ଶୁଖୁଆ ଓ ମଞ୍ଜି ବହୁପରିମାଣରେ ପ୍ରସ୍ତୁତ ହୁଏ । ରେଲ ହେଲା ଦିନୁଁ ମାଛ, ଶୁଖୁଆ ଓ ମଞ୍ଜିର କାରବାର ବଢ଼ିଅଛି ଏବଂ ମହାଜନମାନେ ତାହା କଲିକତା ଓ ରେଙ୍ଗୁନକୁ ଘେନି ଯାଇ ଅଧିକ ମୂଲ୍ୟରେ ବିକ୍ରୟ କରୁ-ଅଛନ୍ତି । ପବନ ପ୍ରବଳ ହେଲେ ଏଠାରେ ଲହରି ହୁଏ । କେଉଟମାନେ ବୃହତ ନୌକା ବାହନ୍ତି ଏବଂ ଯେଉଁଆଡ଼େ ନୌକା ଯାଉଥାଏ ସେହି-ଆଡ଼େ ପବନ ହେଲେ ପାଲ ଟାଙ୍ଗି ଦିଅନ୍ତି ଓ ସେଥିଯୋଗେ ନୌକା ଅତି ବେଗରେ ଚାଲେ ।

ଚିଲିକାର ଦକ୍ଷିଣ ଭାଗରେ ଏକ ପାହାଡ଼ ଅଛି । ତହିଁ ଉପରେ ଗୋଟିଏ ଆସ୍ଥାନରେ କାଳୀଜୟୀ ଠାକୁରାଣୀ ଅଛନ୍ତି । ସେହି ହେତୁରୁ ତାହାକୁ କାଳୀଜୟୀ ପାହାଡ଼ ବୋଲନ୍ତି । ଏହି ବାଟେ ଗଲାବେଳେ ନାହୁରମାନେ ଠାକୁରାଣୀଙ୍କୁ ପୂଜା ଭୋଗ ଦିଅନ୍ତି ; ନୋହିଲେ ବିପଦ ଘଟିବ ବୋଲି ସେମାନଙ୍କର ଆଶଙ୍କା ।

ପୁଷ୍କରଣୀରେ ଯେପରି ଘାପଦଣ୍ଡ ଥାଏ ଓ ତାହା ଚତୁପାଖଯାକ ପାଣିଥାଏ, ସେହିପରି ଚିଲିକା ମଧ୍ୟରେ କାଳୀଜୟୀ ପାହାଡ଼ର ଚତୁର-ଆଡ଼େ ପାଣି । ଏହିରୂପେ ଯେଉଁ ଭୂମିଖଣ୍ଡର ଚତୁରଆଡ଼େ ଜଳଥାଏ, ତାହାକୁ ଟାପୁ ବା ପଠା ବୋଲନ୍ତି । ଭୂଗୋଳଶାସ୍ତ୍ରରେ ତାହାକୁ ଦ୍ୱୀପ ବୋଲନ୍ତି । ଉତ୍ତର ଦିଗରେ ନଳବନ ଗୋଟିଏ ଦ୍ୱୀପ କିନ୍ତୁ ସେଠାରେ ମନୁଷ୍ୟ ବାସ କରନ୍ତି ନାହିଁ । ପାରିକୁଦ ମଧ୍ୟ ଗୋଟିଏ ଦ୍ୱୀପ ଅଟେ । ଚିଲିକାରେ ସେହିପରି ଆଉ ଅନେକ ଟାପୁ ଅଛି ।

ତୁମ୍ଭେ ଦେଖିଛ ଯେ ଦୟା ଓ ଭାର୍ଗବୀ ନଦୀ ଯୋଡ଼ିକ ଚିଲିକାରେ ପଡ଼ିଅଛି । କେଉଁ କୋଣରେ, କହ । ଯେଉଁଠାରେ ଦୟା ମିଶିଅଛି ତାହାକୁ ଦୟାର ମୁହାଣ ଓ ଯେଉଁଠାରେ ଭାର୍ଗବୀ ମିଶିଅଛି ତାହାକୁ ଭାର୍ଗବୀର ମୁହାଣ ବୋଲନ୍ତି । ଆଉ କେତେ ନଦୀ ସମୁଦ୍ରରେ ମିଶିଅଛି; ଯେଉଁଠାରେ ମିଶିଅଛି ତାହାକୁ ନଦୀର ମୁହାଣ ବୋଲନ୍ତି ।

ଖୋରଧା ସବ୍‌ଡିବିଜନ ସହରର ୧୦ ମାଇଲ ପଶ୍ଚିମ ଦିଗରେ ଅତ୍ରି ଗ୍ରାମଠାରେ ପାଣି ସର୍ବଦା ଫୁଟୁଥାଏ । ହାତ ଦେଲେ ତାତ ଯାଏ ଓ ଫୋଟକା ହୋଇପାରେ । ସେ ପାଣି ଆପେ ଭୂମି ଭିତରୁ ବାହାରୁଅଛି । ଏହିପରି ଯେଉଁଠାରେ ପାଣି ଆପେ ଭୂମି ଭିତରୁ ଉପରକୁ ବାହାରେ ତାହାକୁ ପ୍ରସ୍ରବଣ ବୋଲନ୍ତି । ଅନ୍ୟାନ୍ୟ ପ୍ରସ୍ରବଣର ପାଣି ଶୀତଳ କିନ୍ତୁ ଏଠାର ପାଣି ଉଷ୍ଣ । ଏହା ଗୋଟିଏ ଉଷ୍ଣ ପ୍ରସ୍ରବଣ । ପ୍ରତିବର୍ଷ ମକର ସଂକ୍ରାନ୍ତି ଦିନ ଏଠାରେ ମେଳା ହୁଏ ଏବଂ ନାନାସ୍ଥାନରୁ ବହୁତ ଲୋକ ଆସି ଜମା ହୁଅନ୍ତି, ହାଟ ବଜାର ବସେ ଓ କିଣା ବିକା ହୁଏ ।

---

## ୯ମ ପାଠ ।

ମାନଚିତ୍ରରେ ତୁମ୍ଭ ଗ୍ରାମର ନାମ ଲେଖା ଥିବାର ଦେଖୁଅଛ କି?

ଯଦ ନାହିଁ, ତେବେ କାହିଁକ ନାହିଁ, କହିଲ ? ପୁରୀ ଜିଲ୍ଲାରେ ଯେତେ ଗ୍ରାମ ଅଛି ସବୁଗୁଡ଼ିକ ଦେଖାଇବାକୁ ହେଲେ ସ୍ଥାନ ହେବ ନାହିଁ । ଏହି ମାନଚିତ୍ର ଯେଉଁ ସ୍କେଲ୍‌ରେ ହୋଇଅଛି ତହିଁର ଅନେକ ଗୁଣ ବଡ଼ ସ୍କେଲ୍ ହେଲେ ସବୁ ଗ୍ରାମର ଚିହ୍ନ ରହି ପାରନ୍ତା । ଏଥିରେ କେବଳ ବଡ଼ ବଡ଼ ଗ୍ରାମର ନାମ ଓ ଚିହ୍ନ ଅଛି ।

ମାନଚିତ୍ରରେ ପୁରୀ ସହର କାହିଁ ଦେଖ । ତୁମ୍ଭ ଗ୍ରାମର କେଉଁ ଦିଗରେ ଓ କେତେ ଦୂରରେ ? ପୁରୀ ହିନ୍ଦୁମାନଙ୍କର ପ୍ରଧାନ ଧାମ । ଅତିପୂର୍ବ-କାଳରୁ ଏଠାରେ ଜଗନ୍ନାଥଙ୍କ ମନ୍ଦିର ଅଛି । ଆଜକୁ ୭୦୦ ବର୍ଷରୁ କିଛି ଅଧିକ ହେଲା ୧୧୯୮ ମସୀହାରେ ରାଜା ଅନଙ୍ଗଭୀମ ଦେବ ତାହା ନିର୍ମାଣ କରାଇଥିଲେ । ସକଳ ସମୟରେ ବହୁ ଦୂର ଦେଶରୁ ତେଲଙ୍ଗୀ, ବଙ୍ଗାଳୀ ଓ ପଶ୍ଚିମାଯାତ୍ରୀମାନେ ଜଗନ୍ନାଥ ଦର୍ଶନ ପାଇଁ ଆସନ୍ତି । ଦେଉଳ କିପରି ଗଢ଼ାହୋଇଅଛି ଦେଖିଲେ ତୁମ୍ଭେ ଆଶ୍ଚର୍ଯ୍ୟାନ୍ୱିତ ହେବ । ଯେଉଁ କାରିଗରମାନେ ତାହା ଗଢ଼ିଥିଲେ ସେମାନେ ଏହି ଦେଶର ଲୋକ । ବର୍ତ୍ତମାନ ତେମନ୍ତ ବନାଣୀ କାହାନ୍ତି ?

ପୁରୀ ସହରରେ ଜଣେ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଓ କଲେକ୍ଟର ଥାନ୍ତି ଓ ସରକାରବାହାଦୁରଙ୍କର ଖଜଣାଖାନା ଅଛି; ଗୋଟିଏ ଜିଲ୍ଲା ସ୍କୁଲ୍ ଓ ଗୋଟିଏ ସଂସ୍କୃତ ସ୍କୁଲ ଅଛି । ସମୟ ସମୟରେ ଏଠାକୁ ଧୂଆଁକଳ ଜାହାଜ ସମୁଦ୍ରବାଟେ ଆସେ ଏବଂ ଚାଉଳ ଲଦି ନେଇ ବିଦେଶକୁ ଯାଏ । କୂଳରେ ପ୍ରବଳ ଲହରୀ ହେବା ଓ ଅଳ୍ପଜଳ ଥିବା ଯୋଗେ ଜାହାଜ କୂଳକୁ ପ୍ରାୟ ମାଇଲେ ଦୂରରେ ରହେ । ପତାଉ ବୋଲି ଏକ ପ୍ରକାର କ୍ଷୁଦ୍ର ନୌକାଦ୍ୱାରା ଜାହାଜର ଲୋକେ ପୁରୀ ସହରକୁ ଯିବା ଆସିବା କରନ୍ତି ଏବଂ ଚାଉଳ ନେଇକା ଜାହାଜକୁ ଯାଏ ।

ପୁରୀ ସହରର ଉତ୍ତର-ପୂର୍ବକୋଣରେ ୨୨ ମାଇଲ ଦୂରରେ କୋଣାର୍କ ମନ୍ଦିର ଅଛି । ତାହାକୁ କଣାରକ ବୋଲନ୍ତି । ତୁମ୍ଭ ଗ୍ରାମର

କେଉଁଆଡ଼େ କେତେ ଦୂର? ପୁରୀପରି ଏହା ମଧ୍ୟ ସମୁଦ୍ର କୂଳରେ । ଏଠାରେ ସୂର୍ଯ୍ୟଙ୍କ ମନ୍ଦିରଟି ଅତି ବିଚିତ୍ର ଅଟେ । ଅନେକ ସାହେବମାନେ ଦେଖିବା ପାଇଁ ଆସନ୍ତି ଓ ଦେଖି ବିସ୍ମିତ ହୁଅନ୍ତି । ପୁରୀ ବଡ଼ ଦେଉଳ ନିର୍ମାଣ ହେବାର ପ୍ରାୟ ୫୦ ବର୍ଷ ଉତ୍ତାରେ ଏ ଦେଉଳ ଗଢ଼ା ହୋଇ-ଥିଲା ଏବଂ ଭୁମ୍ବ ଦେଶର କାରୀଗରମାନେ ଗଢ଼ିଥିଲେ ।

କଣାରକ ନିକଟରେ ଚନ୍ଦ୍ରଭାଗା ବୋଲି ଆଉ ଗୋଟିଏ ତୀର୍ଥ ଅଛି । ସେଠାରେ ସୂର୍ଯ୍ୟ ଉଦୟ ହେଲାବେଳେ ଅତୀବ ମନୋହର ଦିଶେ । ପ୍ରତିବର୍ଷ ମାଘସପ୍ତମୀ ଦିନ ସହସ୍ରାଧିକ ଲୋକ ଆସି ଜମା ହୁଅନ୍ତି ଏବଂ ସମୁଦ୍ରରେ ସ୍ନାନ ଓ ସୂର୍ଯ୍ୟଙ୍କ ଦର୍ଶନ କରି ପୁଣ୍ୟଲାଭ କରନ୍ତି ।

ପୁରୀ ସହରର ଉତ୍ତର ଦିଗରେ ୧୦ ମାଇଲ ଦୂରରେ ସତ୍ୟବାଦୀ ଗୋଟିଏ ବଡ଼ ଗ୍ରାମ । ସେଠାରେ ଗୋପାଳଜୀଉଙ୍କ ମନ୍ଦିର ପ୍ରସିଦ୍ଧ ଅଟେ । ରେଲୱେର ସାକ୍ଷୀଗୋପାଳ ଷ୍ଟେଶନଠାରୁ ମନ୍ଦିରକୁ ଯିବା ପାଇଁ ପକ୍କା ସଡ଼କ ଅଛି; ଚାଲି ଯିବାକୁ ଅର୍ଦ୍ଧଘଣ୍ଟା ସମୟ ଲାଗେ । ପୁରୀରୁ ଲେଉଟି ଅନେକ ଯାତ୍ରୀ ଓହ୍ଲାଇ ଗୋପାଳଜୀଉଙ୍କ ଦର୍ଶନ କରନ୍ତି । ମହାଜନ-ମାନେ ଷ୍ଟେଶନଠାରେ ନଡ଼ିଆ ଗଦା କରି ରେଲଦ୍ୱାରା ଦୂର ପ୍ରଦେଶକୁ ନେଇ ଯାଇ ଅଧିକ ମୂଲ୍ୟରେ ବିକ୍ରୟ କରନ୍ତି । ସତ୍ୟବାଦୀ ଭୁମ୍ବ ଗ୍ରାମର କେଉଁଆଡ଼େ ଓ କେତେ ଦୂର?

ପୁରୀ ସହରର ଉତ୍ତର ଦିଗରେ ବାଲକାଟୀ ଗୋଟିଏ ବଡ଼ ଗ୍ରାମ । ଏଠାରେ ଥଟାରୀ ସୁନ୍ଦର ବାସନ ଗଢ଼ନ୍ତି କିନ୍ତୁ ଭିନ୍ନ ଭିନ୍ନ ସ୍ଥାନକୁ ଅଧିକ-ପରିମାଣରେ ନେଇ ବିକ୍ରୟ କରିବାର ଶିକ୍ଷା କରି ନାହାନ୍ତି । ସହରରେ ବାସନ ଦୋକାନ କଲେ ସେମାନଙ୍କର ବିଶେଷ ଲାଭ ହୁଅନ୍ତା ।

ପୁରୀ ସହରର ଉତ୍ତର-ପଶ୍ଚିମ କୋଣରେ ଖୋରଧା ସବ୍‌ଡିଭିଜନର ପ୍ରଧାନ ସହର ଖୋରଧା; ଏହାର ଅନ୍ୟ ନାମ ଜଜାରସିଂହ । ସରକାର ବାହାଦୁରଙ୍କର ଖଜଣା ଓସୁଲ କରିବା ପାଇଁ ଏଠାରେ ଜଣେ ତହସିଲ-

ଦାର ଥାନ୍ତି ଓ ସବ୍‌ଡିବିଜନର ଭାର ଜଣେ ଡେପୁଟି ମାଜିଷ୍ଟ୍ରେଟଙ୍କ ଉପରେ ଥାଏ । ଏଠାରେ ଗୋଟିଏ ଏଣ୍ଟ୍ରାନ୍ସ ସ୍କୁଲ୍, ଡାକ୍ତରଖାନା ଓ ସବ୍-ରେଜିଷ୍ଟ୍ରୀ କଚେରୀ ଅଛି । ପୁରୀଠାରୁ କଟକ ରେଲରେ ଗଲାବେଳେ ଖୋରଧା ରୋଡ଼ ବୋଲି ଗୋଟିଏ ଷ୍ଟେଶନ ଅଛି ; ତାହାର ଅନ୍ୟ ନାମ ଜଟଣି । ସେଠାରୁ ଖୋରଧା କଚେରୀ ୭ ମାଇଲ । ଜଟଣିଠାରେ ବୋମ୍ବାଇର ମହାଜନମାନେ ଚାଉଳ କିଣି ବଡ଼୨ ଗୋଦାମ ଘରେ ଜମା କରି ରଖନ୍ତି ଓ ରେଲରେ ଦୂର ପ୍ରଦେଶକୁ ଓ ବିଦେଶକୁ ଘେନି ଯାଇ ଲାଭବାନ୍ ହୁଅନ୍ତି । ଏହା ରେଲରାସ୍ତାର ସଂଯୋଗ ସ୍ଥାନ ବା ଜଙ୍କ୍‌ସନ । ଏହିଠାରୁ ପୁରୀ, କଲିକତା ଓ ମାନ୍ଦ୍ରାଜ ପର୍ଯ୍ୟନ୍ତ ଯିବାର ବାଟ ଅଛି ।

ପୁରୀରୁ କଟକ ଆସିଲେ ଖୋରଧା ରୋଡ଼ ଉତ୍ତରେ ଭୁବନେଶ୍ୱର ଷ୍ଟେଶନ ; ସେଠାରୁ ଭୁବନେଶ୍ୱର ଗ୍ରାମ ପ୍ରାୟ ୪ ମାଇଲ ହେବ । ସେହି ଗ୍ରାମରେ ଲିଙ୍ଗରାଜ ମହାପ୍ରଭୁଙ୍କର ବଡ଼ ଦେଉଳ ଅଛି ; ରେଲଗାଡ଼ୀରେ ଗଲାବେଳେ ଦୂରରୁ ତାହା ଦିଶେ । ମନ୍ଦିରଟି ଏମନ୍ତ ସୁନ୍ଦର ଓ ତାହାର ଗଠନ ଏମନ୍ତ ଚମତ୍କାର ଯେ କେବଳ ତାହା ଦେଖିବା ପାଇଁ ଲାଟ ଓ ବଡ଼ଲାଟ ସାହେବମାନେ ବହୁଦୂରରୁ ଏଠାକୁ ଆସନ୍ତି । ତୁମ୍ଭର ଦେଶର କାରିଗରମାନେ ଏ ଦେଉଳ ଗଢ଼ିଥିଲେ । ରାଜା ଯଯାତି କେଶରୀ ୫୦୦ ଖ୍ରୀଷ୍ଟାବ୍ଦରେ ଆରମ୍ଭ କରିଥିଲେ ଏବଂ ଦେଢ଼ଶ ବର୍ଷରେ ଏହା ଶେଷ ହୋଇଥିଲା

ଖୋରଧା ସବ୍‌ଡିବିଜନର ଦକ୍ଷିଣ ଦିଗରେ ବାଣପୁର । ଏଠାରେ କୁମୁଟି ଜାତିର ଅନେକ ଲୋକ ଅଛନ୍ତି । ଏହା ବାଣିଜ୍ୟର ଏକ ପ୍ରଧାନ ସ୍ଥଳ ; କୁମୁଟିମାନେ ଧାନ ଚାଉଳ ଇତ୍ୟାଦି ନାନା ପଦାର୍ଥର କାରବାର କରନ୍ତି । ବାଣିଜ୍ୟପ୍ରିୟ ଥିବାରୁ ଏମାନେ ଧନୀ ।

ଭୁବନେଶ୍ୱରର ଦକ୍ଷିଣ-ପୂର୍ବ କୋଣରେ ପିପିଲି ଗୋଟିଏ ବଡ଼ ଗ୍ରାମ । ଏଠାରେ ସବ୍‌ରେଜିଷ୍ଟ୍ରୀ କଚେରୀ ଅଛି ; ଅନେକ ଖ୍ରୀଷ୍ଟିୟାନ ଅଛନ୍ତି,

ଗୋଟିଏ ଗିର୍ଜାଘର ଅଛି ଏବଂ ଗୋଟିଏ ବଡ଼ ଦର୍ଜୀସାହି ଅଛି । ଦର୍ଜୀମାନେ ଲୁଗା ମଧ୍ୟରେ ଗୁଣା ଦେଇ ନାନା ଆକାରରେ କୁରୁଡ଼ା, ଟୋପି, ସୁଜୁନି ବଟୁଣା, ଡକାୟାଖୋଲ ଓ ଗୃନ୍ଦୁଆମାନ ଅତି ସୁନ୍ଦରରୂପେ ସିଲେଇ କରନ୍ତି । ସେହି ଦ୍ରବ୍ୟମାନ ସହର ସ୍ଥାନରେ ବିକ୍ରୟ ହେଲେ ଅନେକ ବଡ଼ଲୋକେ କ୍ରୟ କରନ୍ତି ଏବଂ ଦର୍ଜୀମାନଙ୍କର ଲାଭ ହୁଅନ୍ତି ।

ଚିଲିକାର ଦକ୍ଷିଣ-ପୂର୍ବ ଭାଗରେ ପାରିକୁଦ ଦ୍ୱୀପ ଗୋଟିଏ କିଲ୍ଲା; ଏଠାରେ ଜଣେ ରାଜା ଅଛନ୍ତି । ରାଜାଙ୍କର ନାମ କୃଷ୍ଣପ୍ରସାଦ । ହ୍ରଦ ଉପରେ ଭୁଷଣ୍ଡପୁର, କାଲୁପଡ଼ା ଓ ଟାଙ୍ଗୀ ୩ଟି ବାଣିଜ୍ୟସ୍ଥଳୀ ଅଛି । ଭୁଷଣ୍ଡପୁର, କାଲୁପଡ଼ା ଓ ବାଲୁଗାଁଠାରେ ରେଲଷ୍ଟେଶନ ଅଛି ।

---

## ୧୦ମ ପାଠ ।

ତୁମ୍ଭେମାନେ ମାନଚିତ୍ରରେ ଦେଖୁଅଛ ଯେ ପୁରୀ ଜିଲ୍ଲାର ଉତ୍ତର ସୀମାକୁ କଟକ ଜିଲ୍ଲା ଲାଗିଅଛି । ତେବେ କଟକ ଜିଲ୍ଲାର କେଉଁ ଆଡ଼େ ପୁରୀ ଜିଲ୍ଲା? ଦୁଇ ଜିଲ୍ଲାର ମାନଚିତ୍ରର ସ୍କେଲ୍ ସମାନ କି ନା ଦେଖ । ଦୁଇଟିର ଆକାରରେ କି ପ୍ରଭେଦ ଅଛି? କେଉଁଟି ବଡ଼ ଦିଶୁଅଛି? ଉତ୍ତର ଦକ୍ଷିଣରେ ପୁରୀ ଜିଲ୍ଲା କଟକ ଜିଲ୍ଲା ଅପେକ୍ଷା ବଡ଼ ଦିଶୁଅଛି କି ନା? ପୂର୍ବ-ପଶ୍ଚିମରେ ବଡ଼ କି ନା?

କଟକ ଜିଲ୍ଲାର ଉତ୍ତରରେ ବାଲେଶ୍ୱର ଜିଲ୍ଲା ଓ କେନ୍ଦୁଝର, ଦକ୍ଷିଣରେ ପୁରୀ ଜିଲ୍ଲା, ପୂର୍ବରେ ସମୁଦ୍ର ଓ ପଶ୍ଚିମରେ ଖଣ୍ଡପଡ଼ା, ବଡ଼ମ୍ବା, ତିଗିରିଆ, ଆଠଗଡ଼ ଓ ଢେଙ୍କାନାଳ । ଉତ୍ତର ଦକ୍ଷିଣରେ ଏହା ପ୍ରାୟ ୮୦ ମାଇଲ, ଅର୍ଥାତ୍ ୪ ଦିନର ବାଟ ଓ ପୂର୍ବ-ପଶ୍ଚିମରେ ପ୍ରାୟ ୯୦ ମାଇଲ, ଅର୍ଥାତ୍ ୫ ଦିନର ବାଟ । ଏହାର ପରିମାଣ ୩୬୩୩ ବର୍ଗ ମାଇଲ । ୧୯୦୦ ମସୀହା ଲୋକ ସଂଖ୍ୟାରେ ଏ ଜିଲ୍ଲାରେ ପ୍ରାୟ ୨୦



କଟକ ଜିଲାର ମାନଚିତ୍ର ।

ଲକ୍ଷ ଲୋକ ଥିବାର ଜଣା ଯାଇଅଛି । ପୁରୀ ଜିଲ୍ଲାର ଲୋକ ସଂଖ୍ୟାଠୁ କେତେ ଅଧିକ?

ପୁରୀ ଜିଲ୍ଲାରେ ବାଲକାଟୀଠାରେ ଯେଉଁ ନଦୀ ଦୁଇ ଧାରା ହୋଇ ଦୟା ଓ ଭାର୍ଗବୀ ନାମରେ ବହି ଯାଇଅଛି ତାହାର ନାମ କଣ? କୁଆଖାଇଟି ସ୍ୱତନ୍ତ୍ର ନଦୀ ନୁହେଁ, କିନ୍ତୁ କାଠଯୋଡ଼ୀ ନଦୀର ଗୋଟିଏ ଧାରା । କଟକ ସହରଠାରେ କାଠଯୋଡ଼ୀ ନଦୀ ଦୁଇ ଧାରା ହୋଇ କାଠଯୋଡ଼ୀ ନାମରେ ପୂର୍ବ ଦିଗକୁ ଓ କୁଆଖାଇ ନାମରେ ଦକ୍ଷିଣ-ପୂର୍ବ କୋଣରେ ବହି ଯାଇଅଛି । କାଠଯୋଡ଼ୀଟି ମଧ୍ୟ ସ୍ୱତନ୍ତ୍ର ନଦୀ ନୁହେଁ କିନ୍ତୁ ମହାନଦୀର ଗୋଟିଏ ଧାରା । କଟକ ସହରର ପ୍ରାୟ ୫ ମାଇଲ୍ ପଶ୍ଚିମ ଦିଗରେ ନରାଜ । ସେହିଠାରେ ମହାନଦୀ ଦୁଇ ଧାରା ହୋଇ ଗୋଟିଏ ଧାରା ମହାନଦୀ ନାମରେ ସହରର ଉତ୍ତର ପାଖରେ ଓ ଅନ୍ୟଟି କାଠଯୋଡ଼ୀ ନାମରେ ଦକ୍ଷିଣ ପାଖରେ ବହି ଯାଇଅଛି । ପୁଣି କାଠଯୋଡ଼ୀ କିଛି ଦୂର ଗଲାରୁ ତାହାଁ ଦେହରୁ ଆଉ ଗୋଟିଏ ଧାରା ଦେବୀନଦୀ ନାମରେ ଦକ୍ଷିଣ ଦିଗରେ ବହିଯାଇ ସମୁଦ୍ରରେ ମିଶିଅଛି । କଟକ ସହରର ଉତ୍ତର ପାଖରେ ମହାନଦୀ ଦେହରୁ ଉତ୍ତର-ପୂର୍ବ କୋଣରେ ବିରୂପା ନାମରେ ଗୋଟିଏ ଧାରା ବହି ଯାଇଅଛି ଏବଂ ସେହିଠାରୁ ୧୦ ମାଇଲ୍ ଦୂରରେ ପୁଣି ଆଉ ଗୋଟିଏ ଧାରା ଚନ୍ଦ୍ରୋପଲା ନାମରେ ବହି ଯାଇଅଛି ଏବଂ ଚନ୍ଦ୍ରୋପଲା ଦେହରୁ ଲୁଣନଦୀ ବାହାରିଅଛି; ସେହିଠାରେ ମାଛଗାଁ ବୋଲି ଗୋଟିଏ ବନ୍ଦର ଅଛି ।

ତୁମ୍ଭେମାନେ ବଡ଼ ଗଛ ଦେଖିଥିବ । ଗଛ ଦେହରୁ ଯେମନ୍ତ ଡାଳ ବାହାରିଥାଏ ତେମନ୍ତ ମହାନଦୀ ଦେହରୁ ଆଉ କେତେଗୁଡ଼ିଏ କ୍ଷୁଦ୍ର ନଦୀ ବାହାରି ଅଛି; ସେଗୁଡ଼ିକୁ ଶାଖାନଦୀ ବୋଲନ୍ତି । କୌଣସି ବଡ଼ ନଦୀ ଦେହରୁ ଯେଉଁ କ୍ଷୁଦ୍ର ନଦୀମାନ ବାହାରିଥାଏ ସେ ଗୁଡ଼ିକୁ ଶାଖାନଦୀ ବୋଲନ୍ତି । ମହାନଦୀ କଟକ ଜିଲ୍ଲାର ପଶ୍ଚିମରୁ କ୍ରମଶଃ ପୂର୍ବଆଡ଼େ ନାନା

ଧାରରେ ବିଭକ୍ତ ହୋଇ ବହିଯାଇ ସମୁଦ୍ରରେ ମିଶିଅଛି ଏବଂ ଜିଲ୍ଲାର ଦକ୍ଷିଣ ଅଞ୍ଚଳରେ ଜଳ ଦାନ କରୁଅଛି ।

ଜିଲ୍ଲାର ମଧ୍ୟଭାଗରେ ବ୍ରାହ୍ମଣୀ ନାମରେ ଏକ ନଦୀ ଅଛି । ଉତ୍ତର-ପଶ୍ଚିମ ଆଡ଼ୁ ତାହା ଆସି ବାଙ୍କ ବୁଲି ୨ ପୂର୍ବ ଦିଗରେ ସମୁଦ୍ରରେ ମିଶି-ଅଛି । ପୁଣି ସେହି ନଦୀଦେହରୁ ଆଉ ଗୋଟିଏ ନଦୀ ଖରସୁଆ ନାମରେ ବହି କିଛି ଦୂର ଯାଇ ତହିଁରେ ମିଶି ଧାମରା ମୁହାଣଠାରେ ସମୁଦ୍ରରେ ପଡ଼ିଅଛି । ତାହାର ସୁଅ ଟାଣ ଥିବାରୁ ନଦୀକୁ ଖରସୁଆ ବୋଲନ୍ତି । ଦୁଇ ନଦୀରେ ଅନେକ କୁମ୍ଭୀର ଅଛନ୍ତି

ଜିଲ୍ଲାର ଉତ୍ତର ଅଞ୍ଚଳରେ ବୈତରଣୀ ନଦୀ ଅଛି । ତାହା ଉତ୍ତର ଦିଗରୁ ଆସି କେତେ ବାଙ୍କ ବୁଲି ୨ ପୂର୍ବ ଦିଗରେ ବହିଯାଇ ବ୍ରାହ୍ମଣୀସଙ୍ଗେ ମିଶି ସମୁଦ୍ରରେ ପଡ଼ିଅଛି । ତାହା ହିନ୍ଦୁମାନଙ୍କର ଏକ ପବିତ୍ର ନଦୀ ; ତାହା କୂଳରେ ଯାଜପୁର ଗୋଟିଏ କ୍ଷୁଦ୍ର ସହର ଅଛି । ସେହିଠାରେ ଦଶାଶ୍ୱ-ମେଧ ଘାଟରେ ସ୍ନାନ କଲେ ବହୁତ ପୁଣ୍ୟ ହୁଏ ବୋଲି ଅନେକ ଯାତ୍ରୀ ଆସନ୍ତି ।

କଟକ ଜିଲ୍ଲାର ସବୁ ନଦୀ ପଶ୍ଚିମ ବା ଉତ୍ତର-ପଶ୍ଚିମରୁ ବହିଆସି ପୂର୍ବ ଦିଗରେ ସମୁଦ୍ରରେ ମିଶିଅଛି । ଅତଏବ ପଶ୍ଚିମ ଓ ଉତ୍ତର-ପଶ୍ଚିମ ଭାଗ ପୂର୍ବ ଭାଗ ଅପେକ୍ଷା ଉଚ୍ଚତର ଜାଣିବାକୁ ହେବ । ବ୍ରାହ୍ମଣୀ, ଖରସୁଆ ଓ ବୈତରଣୀ ଏକତ୍ର ହୋଇ ସମୁଦ୍ରରେ ମିଶି ଥିବା ସ୍ଥାନ ନିକଟରେ ଭୂମି ଅତି ନୀଚ ଥିବାରୁ ତାହାକୁ ଜଳମାଳ ବୋଲନ୍ତି । ସେ ଅଞ୍ଚଳରେ ବର୍ଷାକାଳରେ ଲୋକେ ବିଶେଷ କଷ୍ଟ ଭୋଗ କରନ୍ତି । ବଢ଼ି ବଢ଼ି ହେଲେ ଧାନବିଲମାନ ଦୁଇ ଚାରି ଦିନ ପର୍ଯ୍ୟନ୍ତ ବରାବର ଜଳରେ ବୁଡ଼ିରହେ ଏବଂ ଫସଲ ନଷ୍ଟ ହୁଏ । ଏହାକୁ ଯୋଥ୍ୟା ମୁଲକ ବୋଲନ୍ତି ।

କଟକ ଜିଲ୍ଲାର ଉତ୍ତର-ପୂର୍ବ ଭାଗରେ କେତେଗୁଡ଼ିଏ ପର୍ବତ ଅଛି । ସୁକିନ୍ଦାରେ ଟମକା ବୋଲି ଯେଉଁ ପର୍ବତ ଅଛି ତାହା ଅତି ଉଚ୍ଚ ।

ରେଲରେ କଟକରୁ ବାଲେଶ୍ୱର ଗଲାବେଳେ ମହାବିନାୟକ ପର୍ବତ ନିକଟରେ ଦିଶେ । ସେଠାକୁ ଶିବରାତ୍ରିଦିନ ବହୁତ ଲୋକେ ଆସନ୍ତି ଏବଂ ହାଟ ବଜାର ବସେ । ତାହାକୁ ଗଣେଶକ୍ଷେତ୍ର ବୋଲାଯାଏ । ସେଠାରେ ଚନ୍ଦନକାଠ ମିଳେ । ସେହିଠାରୁ କିଛି ଦୂରରେ ଆଲମ୍‌ଗିର ବୋଲି ଆଉ ଏକ ପର୍ବତ ଅଛି, ତହିଁରେ ମୁସଲମାନପୀରଙ୍କ ଆସ୍ଥାନ ଅଛି । ତହିଁ ନିକଟରେ ଉଦୟଗିରି ଓ ଲଳିତଗିରିରେ ବୁଦ୍ଧଦେବଙ୍କର ଗୋଟିଏ ପଥର ମୂର୍ତ୍ତି ଅଛି । ଏହି ଅଞ୍ଚଳକୁ ପାର୍ବତ୍ୟ ଅଞ୍ଚଳ ବୋଲାଯାଇପାରେ ।

ଜଳମାଳ ଓ ପାର୍ବତ୍ୟ ଅଞ୍ଚଳ ଛଡ଼ା ଅବଶିଷ୍ଟ ଅଂଶମାନ ଅଧିକ ଉଚ୍ଚ ବା ଅଧିକ ନୀଚ ନୁହେ; ଅତଏବ ସେଗୁଡ଼ିକୁ ସମତଳ ବୋଲାଯାଏ ।

---

## ୧୧ଶ ପାଠ ।

ପୁରୀ ଜିଲ୍ଲାରେ ଯେମନ୍ତ ନଈମାନ ଅଛି କଟକ ଜିଲ୍ଲାରେ ତେମନ୍ତ ନାହିଁ । କିନ୍ତୁ ନଈ ଯାହା କରେ, ନଈ ଯେମନ୍ତ ଅନେକ ବିଲରେ ପାଣି ମଡ଼ାଏ, କଟକ ଜିଲ୍ଲାରେ ନାଲ ସେହିପରି କରେ । ନଈକୁ କେହି ମନୁଷ୍ୟ ଫିଟାଇ ନାହିଁ କି ତିଆରି କରି ନାହିଁ କିମ୍ବା ଇଚ୍ଛା କଲେ ମଧ୍ୟ କେହି କରି ପାରିବେ ନାହିଁ । ନାଲ ତେମନ୍ତ ନୁହେ; ତାହା ମନୁଷ୍ୟଙ୍କ ଦ୍ୱାରା ପ୍ରସ୍ତୁତ ହୋଇଅଛି । ଯିବା ଆସିବାର ଓ କାରବାରର ସୁବିଧା ପାଇଁ ଏବଂ ଧାନବିଲରେ ପାଣି ମଡ଼ାଇବା ପାଇଁ ଦୟାଳୁ ସରକାରବାହାଦୁର ନାଲ ଖୋଳାଇଅଛନ୍ତି ।

ନାଲକୁ ପାଣି କେଉଁଠାରୁ ଆସେ ? ଯେଉଁଠାରେ ମହାନଦୀ ଦେହରୁ କାଠଯୋଡ଼ୀ ପୃଥକ୍ ଧାରା ହୋଇ ବାହାରି ଅଛି, ଅର୍ଥାତ୍ ନରାଜଠାରେ, ଗୋଟିଏ ପଥର ବନ୍ଧ ତିଆରି ହୋଇଅଛି । ସେହି ବନ୍ଧ ନ ଥିଲେ ମହାନଦୀରୁ ଅଧିକ ଜଳ କାଠଯୋଡ଼ୀକୁ ବହି ଆସନ୍ତା ଏବଂ ମହାନଦୀରେ

ଜଳ ଊଣା ହୋଇଯାନ୍ତି ; କିନ୍ତୁ ବନ୍ଧ ଥିବା ଯୋଗେ ସେପରି ନ ହୋଇ ମହାନଦୀରେ ଅନେକ ଜଳ ରହେ । ବନ୍ଧରେ ମଧ୍ୟେ ୨ ଫୁକାରମାନ ଅଛି ; ତାହା ମେଲି କରି ଦେଲେ ଜଳ ବହିଯାଏ, ବନ୍ଦ କରି ଦେଲେ ଅଟକି ରହେ । ବର୍ଷା କାଳରେ ସବୁ ନଦୀରେ ଅତିରିକ୍ତ ଜଳ ଆସେ ବୋଲି ଫୁକାର ବନ୍ଦ କରିବାର ଲୋଡ଼ାପଡ଼େ ନାହିଁ ; ଆଉ ମଧ୍ୟ ସେ ସମୟରେ ନଦୀର ସ୍ରୁଅ ଏଡ଼େ ଟାଣ ହୁଏ ଯେ ବନ୍ଧ ଭାଙ୍ଗି ଯିବାର ଭୟ ହୁଏ । ବର୍ଷାକାଳ ଅନ୍ତେ ନଦୀର ଜଳ କ୍ରମେ ଊଣା ହୋଇ ଆସିଲେ ଫୁକାର ବନ୍ଦ କରି ଦିଅନ୍ତି । ଏହିପରି ବନ୍ଧକୁ ଆନିକଟ ବୋଲନ୍ତି ।

କଟକ ସହରର ଯୋବରା ଘାଟଠାରେ ସେହିପରି ଗୋଟିଏ ଆନିକଟ ଅଛି । ତହିଁରେ ମହାନଦୀର ଜଳ ବନ୍ଦ ହୋଇ ରହେ । ପୁଣି କଟକର ଉତ୍ତର ପଶ୍ଚିମ କୋଣରେ ଚଉଦୁଆରଠାରେ ମହାନଦୀ ଦେହରୁ ବିରୂପା ପୃଥକ୍ ଧାରରେ ବହି ଯାଇଅଛି ; ସେହିଠାରେ ଆଉ ଗୋଟିଏ ଆନିକଟ ଅଛି । ତହିଁରେ ବିରୂପାର ଜଳ ଅଟକି ରହେ । ଏହି ବନ୍ଧ ଗୁଡ଼ିକରେ ଯେଉଁ ଜଳ ଅଟକି ରହେ ତାହା ନାଳକୁ ପୂରଣ କରେ ।

କଟକ ଜିଲ୍ଲାରେ ୪ ଗୋଟି ପ୍ରଧାନ ନାଳ ଅଛି । (୧) ହାଇଲେଭଲ୍ କେନାଲ୍—ବିରୂପା ପଥର ବନ୍ଧର ବାମ ପାର୍ଶ୍ୱରୁ ବାହାରି ଉତ୍ତର ଦିଗରେ କଟକ ଜିଲ୍ଲା ଓ ବାଲେଶ୍ୱର ଜିଲ୍ଲା ମଧ୍ୟ ଦେଇ ଯାଇଅଛି । (୨) କେନ୍ଦ୍ରାପଡ଼ା କେନାଲ୍—ସେହି ପଥର ବନ୍ଧର ଦକ୍ଷିଣ ପାର୍ଶ୍ୱରୁ ବାହାରି ପୂର୍ବ ଦିଗରେ ମାର୍ଶାଘାଇ ପର୍ଯ୍ୟନ୍ତ ଯାଇଅଛି । ଏହି ନାଳ ଦେହରୁ ଗୋଟିଏ ଶାଖା, ପଟାମୁଣ୍ଡେଇ କେନାଲ୍ ନାମରେ ଖୋଲା ହୋଇଅଛି ; ଗୋବରୀ କେନାଲ୍ ଦ୍ୱାରା କଟକସହରଠାରୁ ବାଲେଶ୍ୱର ଜିଲ୍ଲାର ଚାନ୍ଦବାଲି ବନ୍ଦର ପର୍ଯ୍ୟନ୍ତ ଯିବାର ସୁବିଧା ହୋଇଅଛି । (୩) ତାଳଦଣ୍ଡା କେନାଲ୍ ଓ (୪) ମାଛଗାଁ କେନାଲ୍ ।

ନାଳଗୁଡ଼ିକ ବିଶେଷ ଗଭୀର ବା ଓସାର ନୁହେ । ନାଳରେ ଡ ଜଳ ବହିଯାଉଥାନ୍ତା ; କିନ୍ତୁ ତାହା ନ ହୋଇ ପୂରି ରହେ କାହିଁକି ? ଜଳ ବନ୍ଦ କରି ରଖିବା ପାଇଁ ୧୦ । ୧୫ ମାଇଲ ଅନ୍ତରରେ ନାଳ ମଧ୍ୟରେ ବଡ଼ ବଡ଼ ଯୋଡ଼ି କବାଟମାନ ଯୋଡା ହୋଇଅଛି । ଯେଉଁଠାରେ ସେହି ପରି କବାଟ ଅଛି ତାହାକୁ ଲକ୍‌ଘୋଲ ବୋଲନ୍ତି । ନାଳମାନ ଆଜକୁ ପ୍ରାୟ ୪୦ ବର୍ଷ ହେଲା ଖୋଲା ହୋଇଅଛି । ସ୍ଥାନେ ସ୍ଥାନେ ପ୍ରଧାନ ନାଳ ଦେହରୁ କ୍ଷୁଦ୍ର କ୍ଷୁଦ୍ର ନାଳମାନ ଖୋଲା ହୋଇଅଛି ; ତଦ୍ୱାରା ନିକଟସ୍ଥ କ୍ଷେତ୍ରରେ ଜଳ ମାଡ଼େ ।

୬ ବର୍ଷ ହେଲା ରେଲ ହେଲା ଦିନୁଁ ବାଣିଜ୍ୟ ଦ୍ରବ୍ୟ ଓ ଯାତ୍ରୀମାନେ ରେଲ ବାଟେ ଆସୁଅଛନ୍ତି । ତହିଁ ପୂର୍ବେ ଯାତ୍ରୀ ଓ ମାଲ ଲଦି ବଡ଼ ବଡ଼ ଜାହାଜମାନ କଲିକତାରୁ ଚାନ୍ଦବାଲିକୁ ଆସୁଥିଲା ଏବଂ ଚାନ୍ଦବାଲିଠାରୁ ତାହା ଯେନି କ୍ଷୁଦ୍ର ଜାହାଜ ଓ ନୌକା କଟକକୁ ଆସୁଥିଲା । ବର୍ତ୍ତମାନ ମଧ୍ୟ ଜାହାଜ ଯିବା ଆସିବା କରେ କିନ୍ତୁ ପୂର୍ବ ପ୍ରାୟ ଅଧିକ ମାଲ ବା ଯାତ୍ରୀ ଆଣେ ନାହିଁ ।

ନାଳର ଜଳ କୃଷି ପ୍ରତି ବିଶେଷ ସାହାଯ୍ୟ କରେ । ଯଥେଷ୍ଟ ପରି-ମାଣରେ ବର୍ଷା ନୋହିଲେ ସୁଦ୍ଧା ଯେଉଁ ଅଞ୍ଚଳରେ ନାଳ ଅଛି ସେଠାରେ ମରୁଡ଼ି ହୁଏ ନାହିଁ । ଆଉ ମଧ୍ୟ ସବୁ ଋତୁରେ କ୍ଷେତ୍ରକୁ ଜଳ ଯିବାର ସୁବିଧା ଥିବାରୁ ବିଭିନ୍ନ ପ୍ରକାର ଫସଲ ହୁଏ ।

ତଳମାଳରେ ନଦୀବଢ଼ି ଯୋଗେ ଅନେକ ସମୟରେ ଫସଲ ନଷ୍ଟ ହୁଏ । କିନ୍ତୁ ବଢ଼ି ଜଳରେ ଯେଉଁ ମାଟି ଓ ଅନ୍ୟ ଦ୍ରବ୍ୟମାନ ଭାସି ଆସେ ତାହା ବିଲରେ ରହିଯାଏ ; ତାହାକୁ ପଟୁ ବୋଲନ୍ତି । ପଟୁ ମାଟିରେ ଯେମନ୍ତ ଫସଲ ହୁଏ ଆଉ କୌଣସି ଜମିରେ ସେପରି ହୁଏ ନାହିଁ ।

କଟକ ଜିଲ୍ଲାର ପାର୍ବତ୍ୟ ଅଞ୍ଚଳ ଛଡ଼ା ଆଉ ସବୁ ଅଂଶ ଉର୍ବର ଅଟେ । ତହିଁରେ ନାନାପ୍ରକାର ଫସଲ ହୁଏ । ଧାନ, ଆଖୁ, ମୁଗ, ବିରି

କୋଲଥ, ଗହମ, ସୋରଷ, ବରଗୁଡ଼ି, ହରଡ଼, ହଳଦ, ଧୂଆଁପତ୍ର, କପା, ଛଣପଟ୍ଟ ଇତ୍ୟାଦି ପ୍ରଧାନ ।

ତଳମାଳ ଛଡ଼ା ଅନ୍ୟାନ୍ୟ ଅଞ୍ଚଳ ସ୍ୱାସ୍ଥ୍ୟକର ଅଟେ । କଟକ ସହରର ଜଳବାୟୁ ଉତ୍ତମ ଅଟେ; ସେଠାରେ ରହି କାଠଯୋଡ଼ୀନଦୀର ଜଳ ପାନ ଓ ତହିଁରେ ସ୍ନାନ କରି ଅନେକ ପ୍ରବାସୀ ମାଲେରିଆ ଜ୍ୱରରୁ ଆରୋଗ୍ୟ ଲାଭ କରନ୍ତି ।

---

## ୧୨ଶ ପାଠ ।

ପୁରୀଜିଲ୍ଲାରେ କେତୋଟି ସବ୍‌ଡିଭିଜନ ଅଛି? କଟକ ଜିଲ୍ଲାରେ ୩ ଗୋଟି । ଜିଲ୍ଲାର ପୂର୍ବ ଦିଗର କେତେକ ଅଂଶ ଓ ସମସ୍ତ ଦକ୍ଷିଣ ଭାଗ ଘେନି କଟକ ସବ୍‌ଡିଭିଜନ; ତହିଁର ଉତ୍ତର ସୀମାରୁ ଆରମ୍ଭ କରି ଜିଲ୍ଲାର ପୂର୍ବ ଭାଗର ଅଧିକାଂଶ ଓ ଉତ୍ତର-ପୂର୍ବର କେତେକ ଅଂଶ ଘେନି କେନ୍ଦ୍ରାପଡ଼ା; ଏବଂ ଅବଶିଷ୍ଟ ଅଂଶ ଘେନି ଯାଜପୁର ସବ୍‌ଡିଭିଜନ ଗଠିତ ହୋଇଅଛି । କଟକ ସବ୍‌ଡିଭିଜନର ଦକ୍ଷିଣ-ପଶ୍ଚିମ କୋଣରେ ବାଙ୍କୀଠାରେ ଜଣେ ତହସିଲଦାରଙ୍କ କଚେରୀ ଅଛି । ପୂର୍ବେ ସେଠାରେ ଜଣେ ଦେଶୀୟ ରାଜା ଥିଲେ; କିନ୍ତୁ ସେ ନରହତ୍ୟା କରିଥିବାରୁ ୧୮୪୦ ମସୀହାରେ ତାହା ଖାସ୍ କରି ସରକାରବାହାଦୁର ନିଜେ ଶାସନ କରୁଅଛନ୍ତି ।

ପୁରୀ ଜିଲ୍ଲାରେ କେତୋଟି ଥାନା ଅଛି? କଟକ ଜିଲ୍ଲାରେ ତହିଁ ଅପେକ୍ଷା ଅଧିକ ଥାନା । ଏକା କଟକ ସବ୍‌ଡିଭିଜନରେ ୫ ଗୋଟି:— କଟକ, ବାଙ୍କୀ, ସାଲେପୁର, ଜଗତସିଂହପୁର ଓ ତିରତୋଳ । କେନ୍ଦ୍ରାପଡ଼ା ସବ୍‌ଡିଭିଜନରେ ୩ ଗୋଟି:—କେନ୍ଦ୍ରାପଡ଼ା, ଅଳୀ ଓ ପଟାମୁଣ୍ଡେଇ । ଯାଜପୁର ସବ୍‌ଡିଭିଜନରେ ୨ ଗୋଟି:—ଯାଜପୁର ଓ ଧର୍ମଶାଳା । ମାନଚିତ୍ର ଦେଖି ସ୍ଥିର କର, କେଉଁ ଥାନାର କେଉଁ ଦିଗରେ ଅନ୍ୟ ଥାନାମାନ ଅଛି ।

କଟକ ଜିଲ୍ଲାରେ ୭୨ ଗୋଟି ପ୍ରଗଣା ଅଛି ; ପୁରୀ ଜିଲ୍ଲାରେ କେତୋଟି ?

ମାନଚିତ୍ର ଦେଖି କହ କଟକର କେଉଁ ଆଡ଼େ କନିକା, ଆଳୀ, କୁଜଙ୍ଗ, ଦର୍ପଣ, ସୁକିନ୍ଦା, ହରିଶପୁର, ମଧୁପୁର, ଡମପଡ଼ା ଓ ପଟିଆ । ଏଗୁଡ଼ିକୁ କିଲ୍ଲା ବୋଲିଯାଏ । ପୂର୍ବେ ଏଠାର ରାଜାମାନେ ଗଡ଼ଜାତର ରାଜାମାନଙ୍କ ତୁଲ୍ୟ ସରକାରବାହାଦୁରଙ୍କୁ କର ଦେଇ ଆପଣା ରାଜ୍ୟ ଆପେ ଭୁଞ୍ଜୁ-ଥିଲେ । ବର୍ତ୍ତମାନ ଅନ୍ୟାନ୍ୟ ବିଭାଗପରି ଏହି କିଲ୍ଲାମାନ ସରକାରବାହାଦୁର ଶାସନ କରନ୍ତି । କିଲ୍ଲାର ରାଜାମାନେ କଟକ କଲେକ୍ଟରଙ୍କର ଅଧୀନ । ଏ ଅଞ୍ଚଳରେ ଚିରସ୍ଥାୟୀ ବନ୍ଦୋବସ୍ତ ଅଛି ; ଅର୍ଥାତ୍ ଯେଉଁ କର ପୂର୍ବରୁ ଧାର୍ଯ୍ୟ ହୋଇଅଛି ତାହା ଆଉ ସରକାରବାହାଦୁର ବୃଦ୍ଧି କରିବେ ନାହିଁ ।

କଟକ ସଦରସବଡିଭିଜନର ବାଙ୍କୀ ବିଭାଗରେ ବୈଦ୍ୟେଶ୍ୱର ନାମକ ଗୋଟିଏ ପ୍ରଧାନ ଗ୍ରାମ ମହାନଦୀ କୂଳରେ ଅଛି । ସେଠାରେ ଅନେକ ମହାଜନ ଓ କାରିଗର ଅଛନ୍ତି । ଅତି ସୁନ୍ଦର ଥାଳ, ଗିନା ଓ ବାସନ ତିଆରି ହୁଏ । ଏହା ବାଣିଜ୍ୟର ଏକ ପ୍ରଧାନ ସ୍ଥାନ ; ନଦୀକୂଳରେ ଥିବାଯୋଗେ ମନୁଷ୍ୟ ଓ ମାଲ ଭିନ୍ନ୨ ସ୍ଥାନକୁ ଯିବା ଆସିବାର ସୁବିଧା ଅଛି ।

ବୈଦ୍ୟେଶ୍ୱରଠାରେ ନୌକାରେ ବସି ମହାନଦୀର ଉତ୍ତର-ପୂର୍ବ କୋଣରେ କିଛି ଦୂର ଗଲେ କଟକ ସହର ପଡ଼େ । କଟକ ଓଡ଼ିଶାର ରାଜଧାନୀ । ସେଠାରେ କମିଶନର ଓ ଜଜ୍ ସାହେବମାନଙ୍କର କଚେରୀ ଅଛି ଏବଂ ଜଣେ ଜିଲ୍ଲା କଲେକ୍ଟର ମଧ୍ୟ ଥାନ୍ତି । ଗୋଟିଏ କଲେଜ୍, ୪ ଗୋଟି ଏଣ୍ଟ୍ରାନ୍ସ, ଗୋଟିଏ ଡାକ୍ତରୀ ଓ ଗୋଟିଏ ସର୍ଭେ ସ୍କୁଲ ଅଛି । ରୂପାର କାରିଗରିରେ କଟକୀ ବଣିଆମାନେ ସର୍ବତ୍ର ପ୍ରସିଦ୍ଧ । ଏଠାଭଳି ତାରକସିକାମ ଅନ୍ୟ କୌଣସି ସ୍ଥାନରେ ହୁଏ ନାହିଁ । ମୋଚିମାନେ ଏକ-ପ୍ରକାର ଚଟି ଜୋତା ଓ ମଇହଣ୍ଡି ଜୋତା କରନ୍ତି ଯେ ତାହା ଦେଖିବାକୁ ଯେମନ୍ତ ସୁନ୍ଦର ପିନ୍ଧିବାକୁ ତେମନ୍ତ କୋମଳ । ଶିଙ୍ଗର ଅତି ସୁନ୍ଦର ବାଡ଼ି

ଓ ନାନା ପ୍ରକାର ଖେଳନା ଏଠାରେ ପ୍ରସ୍ତୁତ ହୁଏ । କଲିକତାବାସୀ, ବଙ୍ଗ-ବାସୀ ଓ ଅନ୍ୟ ପ୍ରଦେଶର ଲୋକମାନେ ବିଶେଷ ଆଦରରେ ସେହି ଦ୍ରବ୍ୟ-ମାନ କିଣନ୍ତି । ନାନା ଦେଶର ଲୋକେ ଏଠାରେ ଅଛନ୍ତି ଏବଂ ନାନା ଦେଶ ବିଦେଶର ନାନା ପ୍ରକାର ପଦାର୍ଥ ମିଳେ । ସହର ନିକଟରେ ଏକ ରେଲ-ଷ୍ଟେଶନ୍ ଅଛି ଏବଂ ନଦୀ, ନାଲ ଓ ରେଲର ସଙ୍ଗମସ୍ଥଳ ଥିବାରୁ ବାଣିଜ୍ୟ ପକ୍ଷରେ ଏହା ବିଶେଷ ସୁବିଧାଜନକ । ଏଠାରେ ହିନ୍ଦୁ, ମୁସଲମାନ, ବ୍ରାହ୍ମ, ଜୈନ ଓ ଖ୍ରୀଷ୍ଟିୟାନମାନଙ୍କର ଧର୍ମ୍ମମନ୍ଦିରମାନ ଅଛି ।

ମହାନଦୀକୂଳରେ ସହର ମଧ୍ୟରେ ଏକ କିଲ୍ଲା ଅଛି, ତାହାର ନାମ ବାରବାଟି; ତାହା ଚତୁଃପାଖରେ ଗୋଟିଏ ଖାଇ ଘେରିଅଛି । ପୂର୍ବେ କିଲ୍ଲା ମଧ୍ୟରେ ସୈନ୍ୟ ରହୁଥିଲେ; ଏବେ ସହରର ସାହେବ ଓ ବିବି-ମାନଙ୍କର ତାହା ଖେଳଘର ହୋଇଅଛି । ତହିଁ ନିକଟରେ ସରକାର ବାହାଦୁରଙ୍କର ସୈନ୍ୟମାନେ ରହିବାର ସ୍ଥାନ; ତାହାକୁ କେଣ୍ଟନମେଣ୍ଟ ବୋଲନ୍ତି । ତେଲଙ୍ଗା ସିପାହୀ ଏକଦଳ ବହୁଦିନେ ଏଠାରେ ରହୁଥିଲେ, ଅଳ୍ପଦିନ ହେଲା ସରକାରଙ୍କ ହୁକୁମରେ ଅନ୍ୟ ସ୍ଥାନକୁ ଚାଲିଯାଇଅଛନ୍ତି । ସହରର ଦକ୍ଷିଣ ଭାଗରେ କାଠଯୋଡ଼ୀ କୂଳରେ ଏକ ଅତି ଉଚ୍ଚ ପଥର ବନ୍ଧ ଅଛି । ସେହି ଦୃଢ଼ବନ୍ଧ ଥିବାଯୋଗେ ନଦୀବଢ଼ିବେଳେ ସହର ଭିତରକୁ ପାଣି ଆସିପାରେ ନାହିଁ; ତାହା ନ ଥିଲେ କଟକ ସହର ରହିପାରନ୍ତା ନାହିଁ

କଟକର ପ୍ରାୟ ୭ ମାଇଲ ଦୂରରେ ଏକ କ୍ଷୁଦ୍ର ପାହାଡ଼ ଅଛି । ତହିଁ ଉପରେ ଧବଳେଶ୍ୱର ମହାଦେବଙ୍କର ଦେଉଳ ଥିବାରୁ ତାହାକୁ ଧବଳେ-ଶ୍ୱର ବୋଲିଯାଏ । ତାହା ଆଠଗଡ଼ରାଜ୍ୟ ମଧ୍ୟରେ ଯାଏ । ସେ ସ୍ଥାନଟି ଅତିଶୟ ମନୋହର ଓ ସ୍ୱାସ୍ଥ୍ୟକର । ଚତୁଃପାଖରେ ମହାନଦୀ ଓ କାଠ-ଯୋଡ଼ୀ ଘେରିଅଛି; ତଳକାର କାଳୀଜୟୀ ପରି ଏହାକୁ ମଧ୍ୟ ଗୋଟିଏ ଦ୍ୱୀପ ବୋଲିପାରି ।

କଟକର ପୂର୍ବଦିଗରେ ମହାନଦୀ ଯେଉଁଠାରେ ସମୁଦ୍ର ସହିତ ମିଶିଅଛି ସେହିଠାରେ ବତ୍ତୀଘର ବୋଲି ଗୋଟିଏ ଗ୍ରାମ ଅଛି । ସେହିଠାରେ ଏକ ଅତି ଉଚ୍ଚ ସ୍ତମ୍ଭ ଉପରେ ସନ୍ଧ୍ୟାବେଳୁ ସକାଳ ପର୍ଯ୍ୟନ୍ତ ଏକ ଆଲୋକ ଜଳେ; ସମୁଦ୍ରରେ ଯାଉଥିବା ଜାହାଜର ଲୋକେ ସେହି ଆଲୋକ ଦେଖି ଜାଣିପାରନ୍ତି ଯେ ସେହି ସ୍ଥାନରେ ସ୍ଥଳ ଓ ଗ୍ରାମ ଅଛି । ସେହି କାରଣରୁ ତହିଁର ନାମ ବତ୍ତୀଘର ହୋଇଅଛି ।

ସମୁଦ୍ରରେ ଅନେକ ସମୟରେ ଝଡ଼ ତୁଫାନ ହୁଏ ଏବଂ ଜାହାଜ ନଙ୍ଗର ପକାଇ ନିରାପଦରେ ରହିପାରେ ନାହିଁ । ଯେଉଁଠାରେ ସମୁଦ୍ର ସ୍ଥଳ ମଧ୍ୟକୁ ପଶିଆସିଥାଏ କିମ୍ବା ଯେଉଁଠାରେ ନଦୀ ସମୁଦ୍ରରେ ମିଶିଥାଏ ସେଠାରେ ଜାହାଜ ନିରାପଦରେ ଦୀର୍ଘକାଳ ରହିପାରେ ଏବଂ ବାଣିଜ୍ୟ ପଦାର୍ଥ ଲଦିବାର ଓ ଉତ୍ତାରିବାର ସୁବିଧା ହୁଏ । ସେହିପରି ସ୍ଥାନକୁ ବନ୍ଦର ବୋଲନ୍ତି; ବତ୍ତୀଘର ଗୋଟିଏ ବନ୍ଦର ।

ତାହାର ଅନ୍ୟ ନାମ ଫଲ୍ସପଏଣ୍ଟ । ସେହିଠାରେ ଦେଖିବ ସ୍ଥଳଭାଗ କ୍ରମେ ସରୁ ହୋଇ ସମୁଦ୍ର ଭିତରକୁ ପଶିଯାଇଅଛି । ଯେଉଁଠାରେ ସ୍ଥଳ ସେହିପରି ସରୁ ହୋଇ ସମୁଦ୍ର ଭିତରକୁ ପଶିଯାଇଥାଏ ତାହାକୁ ଅନ୍ତରୀପ ବୋଲନ୍ତି । ଫଲ୍ସପଏଣ୍ଟ ଗୋଟିଏ ଅନ୍ତରୀପ । କଟକ ଜିଲ୍ଲାରେ ଆଉ ଏକ ଅନ୍ତରୀପର ନାମ ପାମିରା ।

---

## ୧୩ଶ ପାଠ ।

କେନାଲରେ କଟକଠାରୁ ଜାହାଜରେ ଗଲେ କେନ୍ଦ୍ରାପଡ଼ା ଲକ୍‌ଠାରେ ପହଞ୍ଚିବାକୁ ପ୍ରାୟ ୧୨ ଘଣ୍ଟା ସମୟ ଲାଗେ । ସେହିଠାରେ କେନ୍ଦ୍ରାପଡ଼ା ସବ୍‌ଡିଭିଜନ ସହର । ତାହା ଏକ କ୍ଷୁଦ୍ର ସହର; ତହିଁରେ ବଳରାମଜୀଉଙ୍କ ମନ୍ଦିର ଅଛି ଏବଂ ସେଠାକୁ ଅନେକ ବୈଷ୍ଣବ ଓ

ସନ୍ୟାସୀମାନେ ଆସନ୍ତି । ଜଣେ ଡେପୁଟି ମାଜିଷ୍ଟ୍ରେଟ୍ ଓ ଜଣେ ମୁନ୍‌ସଫଙ୍କ କଚେରୀ, ରେଜେଷ୍ଟ୍ରୀ କଚେରୀ, ଗୋଟିଏ ଏଣ୍ଟ୍ରାନ୍ସ ସ୍କୁଲ ଓ ଡାକ୍ତରଖାନା ଅଛି । ସେହି ସହରର ନିକଟରେ ଗୁଲ୍‌ନଗର ବୋଲି ଏକ ବୃହତ୍ ଗ୍ରାମରେ ଅନେକ ତନ୍ତୀ ଅଛନ୍ତି । ସେମାନେ ଅତି ଉତ୍କୃଷ୍ଟ ସୂତାଲୁଗା ବୁଣନ୍ତି । ଯୋଡ଼ିଏ ଲୁଗା ବା ଖଣ୍ଡିଏ ଶାଢ଼ୀର ଦାମ ୪ ୫୦ ଙ୍କା ବା ତହିଁ ଅଧିକରେ ବିକ୍ରୟ ହୋଇପାରେ ।

ବୈତରଣୀ ନଦୀ କୂଳରେ ଯାଜପୁର ସହର । ପୂର୍ବେ କଟକରୁ ଏଠାକୁ କାଲରେ କଲ-ଜାହାଜ ଯିବା ଆସିବା କରୁଥିଲା; ବର୍ତ୍ତମାନ ଯାଜପୁର-ରୋଡ ଷ୍ଟେଶନ ପର୍ଯ୍ୟନ୍ତ ରେଲଗାଡ଼ୀରେ ଯାଇ ସେଠାରୁ ପ୍ରାୟ ୧୬ ମାଇଲ ବଳଦଗାଡ଼ୀରେ, ଶୁଆରରେ ଅବା ଚାଲି ଯିବାକୁ ହୁଏ । ଯାଜପୁରରେ ବିରଜାଠାକୁରାଣୀଙ୍କ ମନ୍ଦିର ଅଛି; ସେଥିପାଇଁ ଏହାର ନାମ ବିରଜାପୀଠ । ଅନେକ ପ୍ରାଚୀନ କୀର୍ତ୍ତିଚିହ୍ନ ଅଛି; ଏବଂ ବହୁସଂଖ୍ୟକ ଶିବଲିଙ୍ଗ ଦେଖାଯାନ୍ତି । ପୂର୍ବେ ଏ ନଗର ଓଡ଼ିଶାର ରାଜଧାନୀ ଥିଲା । ସେଠାରେ ଜଣେ ଡେପୁଟି ମାଜିଷ୍ଟ୍ରେଟ୍ ଓ ଜଣେ ମୁନ୍‌ସଫଙ୍କ କଚେରୀ, ରେଜେଷ୍ଟ୍ରୀ କଚେରୀ, ଏଣ୍ଟ୍ରାନ୍ସ ସ୍କୁଲ୍ ଓ ଡାକ୍ତରଖାନା ଅଛି ।

କଟକ ସହରର ପ୍ରାୟ ୪ ମାଇଲ ଉତ୍ତର-ପଶ୍ଚିମ କୋଣରେ ଚଉଦୁଆର ଗ୍ରାମ । ସେଠାରେ ପୁରାତନ ଭଗ୍ନପ୍ରାଚୀର ଇତ୍ୟାଦି ଦେଖିଲେ ଅନୁମାନ ହୁଏ ଯେ ପୂର୍ବେ ତାହା ଏକ ଗଡ଼ ବା କିଲ୍ଲା ଥିଲା । ତହିଁର ଉତ୍ତର-ପୂର୍ବ ଅଡ଼େ ଛତିଆ ବଜାର । ସେଠାରେ କେତେଗୁଡ଼ିଏ ଦୋକାନ ଅଛି, ପ୍ରବାସୀମାନେ ରହିବା ପାଇଁ ଚଟିଘର ଅଛି ଓ ଅନେକ ବାସନ ବିକ୍ରୟ ହୁଏ ।

କଟକଜିଲା ମଧ୍ୟରେ ଝଙ୍କଡ଼ ଗୋଟିଏ ପ୍ରଧାନ ଗ୍ରାମ । ସେଠାରେ ସାରଳାଠାକୁରାଣୀଙ୍କ ମନ୍ଦିର ଅଛି । ଓଡ଼ିଶାର ପ୍ରାଚୀନ ଓ ବର୍ତ୍ତମାନ କବିମାନେ କାବ୍ୟର ଆରମ୍ଭରେ ତାହାଙ୍କର ସ୍ତବ ଗାୟନ କରନ୍ତି ।

ଯେଉଁ ସାରଳାଦାସଙ୍କ ମହାଭାରତପୋଥି ଲୋକେ ବୋଲନ୍ତି ସେହି ମହାତ୍ମା ଏହି ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । କଟକ ସହରଠାରୁ ଅଳ୍ପ ଦୂରରେ କସବନଗର ଗ୍ରାମରେ ଅନେକ ବଙ୍ଗାଳୀ କାୟସ୍ଥମାନଙ୍କର ନିବାସ ଅଛି । ସେଠାରେ ବହୁସଂଖ୍ୟକ ତନ୍ତି ଅଛନ୍ତି । ସେମାନେ ଉତ୍ତମ ଲୁଗା ଓ ଗାମୁଛା ବୁଣନ୍ତି ଏବଂ ନାନାସ୍ଥାନରେ ନେଇ ବିକ୍ରୟ କରନ୍ତି ।

ମାନଚିତ୍ରରେ ଓଲାବର, ଅମୁରେଶ୍ୱର, କଲ୍ୟାଣପୁର, ପୁନାଙ୍ଗ, ମହାଙ୍ଗା, ସୁଙ୍ଗଡ଼ା, ସିଙ୍ଗ୍ଲୋ, ରଘୁନାଥପୁର ଓ ବନ୍ଦ୍ୱାରପୁର ଗ୍ରାମମାନ ଦେଖ । ଏମାନ କଟକ ଜିଲ୍ଲାର ପ୍ରଧାନ ଗ୍ରାମ । ପ୍ରତ୍ୟେକ ଗ୍ରାମ ତୁମ୍ଭ ନିଜ ଗ୍ରାମର ଓ କଟକସହରର କେଉଁ ଆଡ଼େ କେତେଦୂର ତାହା ସ୍ଥିର କର ।

ପୁରୀ ଜିଲ୍ଲା ପରି କଟକ ଜିଲ୍ଲାରେ ମଧ୍ୟ ହାଟମାନ ଅଛି । ମାନଚିତ୍ରରେ ନିମ୍ନଲିଖିତ ସ୍ଥାନମାନ ଦେଖ:—ଟାଙ୍ଗୀ, କୁମୁଡ଼ା, ହରିପୁର, ବଲହାଟ, କଲାପଥର, ଭଦ୍ରେଶ୍ୱର, ଚର୍ଚ୍ଚିକା, ତୁଳସୀପୁର ପ୍ରଧାନ ହାଟମାନ ଅଟେ ।

---

## ୧୪ଶ ପାଠ ।

ତୁମ୍ଭେ ଜାଣିଅଛ ଯେ କଟକ ଜିଲ୍ଲାର ଉତ୍ତର ଦିଗରେ ବାଲେଶ୍ୱର ଜିଲ୍ଲା; ତେବେ ବାଲେଶ୍ୱର ଜିଲ୍ଲାର କେଉଁଆଡ଼େ କଟକ ଜିଲ୍ଲା? ମାନଚିତ୍ରରେ ଦେଖ ଦୁଇ ଜିଲ୍ଲା ମଧ୍ୟରେ ଏକ ନଦୀ ଅଛି; ତାହାର ନାମ କଅଣ? ବୈତରଣୀ ନଦୀ ବାଲେଶ୍ୱର ଜିଲ୍ଲାର ଦକ୍ଷିଣସୀମା ; ସମୁଦ୍ର ପୂର୍ବସୀମା ; ମୟୂରଭଞ୍ଜ ଓ ମେଦିନୀପୁର ଜିଲ୍ଲା ଉତ୍ତରସୀମା ; ଏବଂ ନୀଳଗିରି, ମୟୂରଭଞ୍ଜ ଓ କେନ୍ଦୁଝର ପଶ୍ଚିମସୀମା ଅଟେ ।

ଏହି ଜିଲ୍ଲାର ଆକାର ସହିତ କଟକ ଓ ପୁରୀ ଜିଲ୍ଲାର ଆକାର ତୁଳନା କର । ଉତ୍ତରରୁ ଦକ୍ଷିଣକୁ ଏହାର ଲମ୍ବା ୪୬ କ୍ରୋଶ ପ୍ରାୟ ;




ବାଲେଶ୍ୱର ଜିଲ୍ଲାର ମାନଚିତ୍ର ।

କିନ୍ତୁ ଓସାର ସବୁଠାରେ ସମାନ ନୁହେ । ମାନଚିତ୍ର ଦେଖିଲା ମାତ୍ରେ ଜାଣିବ ଯେ ଦକ୍ଷିଣରେ ଅଳ୍ପ ଅଂଶ ଉତ୍ତରଭାଗ ଅପେକ୍ଷା ଅଧିକ ଓସାର ଅଟେ । ଦକ୍ଷିଣରେ ସେହି ଅଂଶରେ ଓସାର ପ୍ରାୟ ୧୫ କ୍ରୋଶ ହେବ ; କିନ୍ତୁ ସେହିଠାରୁ ଉତ୍ତର ଦିଗକୁ ସରୁ ହୋଇ ଯାଇଅଛି ଏବଂ ଓସାର ୬, ୭ କ୍ରୋଶରୁ ଅଧିକ ନୁହେ । ଅର୍ଥାତ୍ ପ୍ରାୟ ଓଳିକର ବାଟ । ଏ ଜିଲ୍ଲାର ଭୂମିର ପରିମାଣ ୧୦୭୭ ବର୍ଗମାଇଲ ; କଟକ ଓ ପୁରୀ ଜିଲ୍ଲା ସହିତ ତୁଳନା କର । ଏହାର ଲୋକସଂଖ୍ୟା ପ୍ରାୟ ୧୦ ଲକ୍ଷ ହେବ । ତିନି ଜିଲ୍ଲା ମଧ୍ୟରେ କେଉଁ ଜିଲ୍ଲାରେ ସବାପେକ୍ଷା ଅଧିକ ଲୋକ ଅଛନ୍ତି ? କେଉଁ ଜିଲ୍ଲାରେ ଊଣା ?

ବୈତରଣୀ ନଦୀ ଏହି ଜିଲ୍ଲାର ଦକ୍ଷିଣ—ପଶ୍ଚିମ କୋଣରୁ ବରାବର ଦକ୍ଷିଣ-ପୂର୍ବ କୋଣ ପର୍ଯ୍ୟନ୍ତ ବହିଯାଇ ସମୁଦ୍ରରେ ମିଶିଅଛି । ନଦୀର ଉତ୍ପତ୍ତି ଦୂର ଗଡ଼ଜାତ ମଧ୍ୟରୁ ହୋଇଅଛି ; ଏହାର ମୁହାଣର ପଶ୍ଚିମ ଦିଗରେ ଚାନ୍ଦବାଲି ଗୋଟିଏ ବଡ଼ ଗ୍ରାମ ଓ ବନ୍ଦର । ସେଠାକୁ କଲିକତାରୁ ସମୁଦ୍ରବାଟେ ବଡ଼୨ କଳଜାହାଜମାନ ଆସେ । ବଡ଼୨ ମହାଜନମାନଙ୍କର ଗୋଦାମ୍, ଚିଠିଘର, ବଜାର୍, ଡାକ୍ତରଖାନା ଅଛି । କଟକରୁ କେନାଲ୍‌ବାଟେ ମନୁଷ୍ୟ ଓ ମାଲ୍ ଏଠାକୁ ଆସି ବଡ଼ ଜାହାଜରେ କଲିକତା ଯାଏ ଏବଂ କଲିକତାରୁ ଆସି କ୍ଷୁଦ୍ର ଜାହାଜ ଓ ନୌକାରେ କଟକ ଅସେ ।

ବୈତରଣୀ, ବ୍ରାହ୍ମଣୀ ଓ ଖରସୁଆ ଯେଉଁଠାରେ ସମୁଦ୍ରରେ ମିଶିଅଛି ତାହାକୁ ଧାମରା ମୁହାଣ ବୋଲନ୍ତି । ସେଠାରେ ନଦୀ ଏଡେ ଓସାର ଯେ କୂଳ ଦିଶେ ନାହିଁ, ସମୁଦ୍ର ପରି ବୋଧ ହୁଏ । ଚାନ୍ଦବାଲିଠାରୁ ଜାହାଜ ସେହିବାଟେ ପୂର୍ବଦିଗରେ ଅଳ୍ପଦୂର ଗଲେ ସମୁଦ୍ରରେ ପଡ଼େ । ମୁହାଣର ପାଣି ମାଟିଆ ; ସମୁଦ୍ରର ପାଣି ଘନନୀଳ ବା କଳା ଥିବାରୁ ଲୋକେ କଳାପାଣି ବୋଲନ୍ତି ।

ଜିଲ୍ଲାର ଦକ୍ଷିଣ ଓ ପୂର୍ବ ଭାଗରେ ଆଉ ଗୋଟିଏ ନଦୀ ଅଛି ; ତାହାର ନାମ ଶାଳନ୍ଦୀ । ଗଡ଼ଜାତ ମଧ୍ୟରୁ ଆସି ତାହା ବୈତରଣୀ ସହିତ ମିଶି-ଅଛି । ଶାଳନ୍ଦୀ କ୍ଷୁଦ୍ର ଥିବାରୁ ବୈତରଣୀ ସହିତ ମିଶି ନିଜ ନାମ ହରାଇ ଅଛି ; ଯେଉଁଠାରେ ମିଶିଅଛି ସେହିଠାରୁ ସମୁଦ୍ର ପର୍ଯ୍ୟନ୍ତ ନଦୀର ନାମ ଶାଳନ୍ଦୀ ନୁହେଁ, ବୈତରଣୀ । ଯେଉଁ ନଦୀ ସେହିପରି ଭିନ୍ନ ସ୍ଥାନରୁ ଭିନ୍ନ ଧାରରେ ବହି ଆସି ଆଉ ଗୋଟିଏ ବଡ଼ ନଦୀ ସଙ୍ଗେ ମିଶି ସମୁଦ୍ରରେ ପଡ଼ିଥାଏ ତାହାକୁ ଉପନଦୀ ବୋଲନ୍ତି । ଶାଳନ୍ଦୀ ବୈତରଣୀର ଗୋଟିଏ ଉପନଦୀ; ତାହାର ଜଳ ଅତିଶୟ ସ୍ୱଚ୍ଛ । ବୈତରଣୀର ଆଉ ଏକ ଉପନଦୀର ନାମ ମତେଇ ।

କାଁଶବାଁସ ନାମରେ ଏକ ନଦୀ ପଶ୍ଚିମସୀମା ନୀଳଗିରି ମଧ୍ୟରୁ ଆସି ଜିଲ୍ଲାର ମଧ୍ୟଭାଗ କାଟି ଯାଇ ସମୁଦ୍ରରେ ମିଶିଅଛି । ତାହାର ମୁହାଣ ନିକଟରେ ଲଇଛଣପୁର ବନ୍ଦର ; ସେଠାରେ ସାମାନ୍ୟ ପରିମାଣ ବାଣିଜ୍ୟ ହୁଏ । ଜିଲ୍ଲାର ଉତ୍ତର ଭାଗରେ ବୁଢ଼ାବଳଙ୍ଗ ନଦୀ ଅଛି । ମୟୂରଭଞ୍ଜ-ଗଡ଼ଜାତ ମଧ୍ୟରୁ ବାହାରି ବାଲେଶ୍ୱର ସହର କାଟି ତାହା ବକ୍ର ଗତିରେ ଯାଇ ସମୁଦ୍ରରେ ମିଶିଅଛି । ଆଉ ଅଧିକ ଉତ୍ତରଭାଗରେ ସୁବର୍ଣ୍ଣରେଖା ନଦୀ ପ୍ରଧାନ ଅଟେ । ତାହାର କୂଳରେ ଜଲେଶ୍ୱର ଏକ ପ୍ରଧାନ ଗ୍ରାମ ଓ ଥାନା । ତାହାର ପୂର୍ବକୁ ଅଳ୍ପଦୂର ଗଲେ ବାଲିଆପାଳ ଏକ ଥାନା ଓ ବନ୍ଦରଠାରେ ପହଞ୍ଚିବ । ନଦୀର ମୁହାଣରେ ପିପିଲି ବୋଲି ଏକ ପ୍ରାଚୀନ ବନ୍ଦର ଅଛି ।

ବାଲେଶ୍ୱର ଜିଲ୍ଲାର ସମସ୍ତ ନଦୀ ପଶ୍ଚିମ ଦିଗରୁ ବହି ଆସି ପୂର୍ବଦିଗରେ ସମୁଦ୍ରରେ ମିଶିଅଛି । ତେବେ କେଉଁ ଆଡ଼ ଉଚ ? କେଉଁ ଆଡ଼ ନୀଚ ? ପାହାଡ଼ ପର୍ବତ କେବଳ ପଶ୍ଚିମସୀମାରେ ଅଛି ; ଜିଲ୍ଲା ମଧ୍ୟରେ ନାହିଁ । ଉର୍ବରତାରେ ଏ ଜିଲ୍ଲା କଟକ ଜିଲ୍ଲା ଅପେକ୍ଷା ଊଣା ହେବ । ଜଳବାୟୁ

ବିଶେଷ ସ୍ୱାସ୍ଥ୍ୟକର ନୁହେ; ବରଂ ଉତ୍ତରାଞ୍ଚଳ ଅସ୍ୱାସ୍ଥ୍ୟକର ବୋଲି ଯାଇପାରେ ।

---

୧୫ଶ ପାଠ ।

ପୁରୀ ଓ କଟକ ଜିଲ୍ଲାରେ କେତୋଟି ସବ୍‌ଡିଭିଜନ? ବାଲେଶ୍ୱର ଜିଲ୍ଲାରେ ୨ ଗୋଟି । ଜିଲ୍ଲାର ଦକ୍ଷିଣ ଅଂଶ ଭଦ୍ରଖ ଓ ଉତ୍ତର ଅଂଶ ବାଲେଶ୍ୱର ସବ୍‌ଡିଭିଜନର ଅନ୍ତର୍ଗତ ।

ବାଲେଶ୍ୱର ସବ୍‌ଡିଭିଜନରେ ୫ ଗୋଟି ଥାନା ଅଛି; ଉତ୍ତର-ପଶ୍ଚିମ ଭାଗରେ ଜଲେଶ୍ୱର ଥାନା; ତହିଁର ପୂର୍ବଭାଗ ବସ୍ତା; ତହିଁର ଦକ୍ଷିଣ-ପୂର୍ବରେ ବାଲିଆପାଲ; ତହିଁର ଦକ୍ଷିଣ-ପଶ୍ଚିମରେ ବାଲେଶ୍ୱର ସଦର; ଓ ତହିଁର ଦକ୍ଷିଣ ଅଢ଼େ ସୋର ଥାନା । ଭଦ୍ରଖ ସବ୍‌ଡିଭିଜନରେ ୪ ଗୋଟି ଥାନା :—ସୋରର ଦକ୍ଷିଣ-ପୂର୍ବରେ ବାସୁଦେବପୁର; ତହିଁର ଦକ୍ଷିଣରେ ଚାନ୍ଦବାଲି; ତହିଁର ପଶ୍ଚିମରେ ଧାମନଗର ଓ ତହିଁର ଉତ୍ତରରେ ଭଦ୍ରଖ ଥାନା

ଏହି ଜିଲ୍ଲାରେ ୭୨ ଗୋଟି ପ୍ରଗଣା ଓ ଛ ହଜାରରୁ ଅଧିକ ଗ୍ରାମ ଅଛି । କଟକ ଓ ପୁରୀ ଜିଲ୍ଲାରେ କେତେ?

ଯେମନ୍ତ ମହାନଦୀ କୂଳରେ କଟକ ତେମନ୍ତ ବୁଢ଼ାବଳଙ୍ଗ କୂଳରେ ବାଲେଶ୍ୱର ସହର ଅଛି । ସେଠାରେ ଜଣେ ଜିଲ୍ଲାକଲେକ୍ଟର ଓ ମୁନ୍‌ସଫଙ୍କ କଚେରୀ ଅଛି । ରେଲଷ୍ଟେଶନଠାରୁ ସହର ଅଳ୍ପ ବାଟ । ରେଲ ହେବା ପୂର୍ବେ ଏହା ଏକ ପ୍ରଧାନ ବନ୍ଦର ଥିଲା ଏବଂ କଲିକତାରୁ ପ୍ରତି ସପ୍ତାହ ଜାହାଜ ଆସୁଥିଲା । ଏଠାରେ ଅତିସୁନ୍ଦର ବାସନ ବିକ୍ରୟ ହୁଏ ଏବଂ ଚାଉଳ ବିଦେଶକୁ ରପ୍ତାନୀ ହୁଏ । ଦୁଇଟି ଏଣ୍ଟ୍ରାନ୍ସସ୍କୁଲ ଏବଂ ଗୋଟିଏ ବଡ଼ ଡାକ୍ତରଖାନା ଅଛି ।

ସହରର ନିକଟରେ ରେମୁଣା ବୋଲି ଗୋଟିଏ ବଡ଼ ଗ୍ରାମ ଅଛି । ତହିଁରେ ଅନେକ ଥଟାରୀ ଓ କଂସାରିମାନଙ୍କ ନିବାସ । ସେମାନେ ବାଲେଶ୍ୱରୀ ବାସନ ତିଆରି କରନ୍ତି । ସେଠାରେ କ୍ଷୀରଚୋରା ଗୋପୀନାଥଙ୍କ ମନ୍ଦିର ପ୍ରସିଦ୍ଧ ଅଟେ । ରେମୁଣା ନିକଟରେ କଳାପାହାଡ଼ସାହି ଗ୍ରାମରେ ଅନେକ ମୁସଲମାନମାନଙ୍କର ନିବାସ । ଆମ୍ଭମାନଙ୍କ ଦେଶର ଦେବଦେବୀଙ୍କ ମୂର୍ତ୍ତିମାନ ଯେଉଁ କଳାପାହାଡ଼ ଭାଙ୍ଗି ଖଣ୍ଡିଆ କରିଥିଲା ସେ କିଛିଦିନ ଏହିଠାରେ ବାସ କରିଥିଲା ବୋଲି ଏହାର ନାମ କଳାପାହାଡ଼ସାହି ହୋଇଅଛି ।

ରାଇବଣିଆ ଗୋଟିଏ ପ୍ରଧାନ ଗ୍ରାମ; ସେଠାରେ ଅତିପ୍ରାଚୀନ ଦୁର୍ଗର ଚିହ୍ନ ଦେଖାଯାଏ । କୁପାରିରେ ବୌଦ୍ଧମାନଙ୍କ ପ୍ରାଚୀନ କୀର୍ତ୍ତି ଅଛି । ଭଦରଖ ସବ୍‌ଡିବିଜନ ସହର ଶାଳନ୍ଦୀନଦୀ କୂଳରେ ଅଛି । ସେଠାରେ ରେଳଷ୍ଟେଶନ ଓ ବୃହତ୍ ମୁସଲମାନବସତି ଅଛି । ଜଣେ ଡେପୁଟି-କଲେକ୍ଟର ଓ ଜଣେ ମୁନ୍‌ସଫ ଥାନ୍ତି ଏବଂ ଏଣ୍ଟ୍ରାନ୍ସସ୍କୁଲ ଓ ଡାକ୍ତର-ଖାନା ଅଛି ।

ଅନ୍ୟ ଦୁଇଟି ଜିଲ୍ଲା ପରି ଏ ଜିଲ୍ଲାରେ ମଧ୍ୟ କେତେଗୁଡ଼ିଏ ହାଟ ଅଛି । ତହିଁ ମଧ୍ୟରେ ଦେଉଳା, ସିଙ୍ଗଳା, ଗୁଡ଼ିଗଡ଼ିଆ, ରେମୁଣା, ଭଦରଖ, ଦୁବୋଲା ଓ ଜାମହାଡ଼ି ପ୍ରଧାନ ଅଟେ ।

---

## ୧୭ଶ ପାଠ ।

ଉପରୋକ୍ତ ତିନି ଜିଲ୍ଲା ଓ ଆଉ ଗୋଟିଏ କ୍ଷୁଦ୍ର ଜିଲ୍ଲାକୁ ଏକତ୍ର ମୋଗଲବନ୍ଦୀ ବୋଲାଯାଏ । ପୂର୍ବେ ଅନଗୁଳ ଜଣେ ଦେଶୀୟ ରାଜାଙ୍କ ଅଧୀନ ଥିଲା । ରାଜା ବାରମ୍ବାର ସରକାର ବାହାଦୁରଙ୍କ ଆଦେଶ ନ ମାନିବା ଓ ତାଙ୍କ ବିପକ୍ଷରେ ଯୁଦ୍ଧର ଚେଷ୍ଟା କରିବାରୁ ତାହା ୧୮୭୪

ମସୀହାରେ ଖାସ୍ ହୋଇ ମୋଗଲବନ୍ଦୀରେ ମିଶିଅଛି । ଏ ଜିଲ୍ଲାରେ ଦୁଇ ଗୋଟି ସବ୍‌ଡିବିଜନ; କନ୍ଧମାଳ ଓ ଅନୁଗୁଳ । ତାହା ଅନ୍ୟ ତିନି ଜିଲ୍ଲାକୁ ଲାଗି ନାହିଁ । କଟକ ଜିଲ୍ଲାର ପଶ୍ଚିମସୀମାକୁ ନିକଟ ଅଟେ, କିନ୍ତୁ ମଧ୍ୟରେ ଆଠଗଡ଼, ବଡ଼ାମ୍ବା ଓ ହିନ୍ଦୋଳ ଗଡ଼ଜାତ ଅଛି । ତାହାର ଉତ୍ତରସୀମା ରେଢ଼ାଖୋଲ, ବାମଣ୍ଡା ଓ ତାଳଚେର; ଦକ୍ଷିଣସୀମା ହିନ୍ଦୋଳ, ନରସିଂହପୁର ଓ ଦଶପଲ୍ଲା; ପୂର୍ବସୀମା ତାଳଚେର, ହିନ୍ଦୋଳ ଓ ଢେଙ୍କାନାଳ; ଏବ ପଶ୍ଚିମସୀମା ବୌଦ୍ଧ, ଆଠମଲ୍ଲିକ ଓ ରେଢ଼ାଖୋଲ । ଏ ଜିଲ୍ଲାରେ ପ୍ରାୟ ଦେଢ଼ହଜାର ଗ୍ରାମ ଓ ଦେଢ଼ଲକ୍ଷରୁ କିଛି ଅଧିକ ଲୋକ ଅଛନ୍ତି; ଭୂମିପରିମାଣ ୧୬୮୧ ବର୍ଗମାଇଲ । ପ୍ରଧାନ ନଗର ଫୁଲୁରଶିଙ୍ଗାରେ ମାଜିଷ୍ଟ୍ରେଟଙ୍କ କଚେରୀ, ଡାକ୍ତରଖାନା ଓ ବଜାର ଅଛି । ନୂଆଖେଡ଼ା, କନ୍ତ୍ରମେଘ ଓ ତଳଗଡ଼ରେ ମଧୁର କମଳାଲେମ୍ବୁ ମିଳେ । ତଳମୂଳ, ମାଣିକଯୋଡ଼ା, ପୁରୁଣାକୋଟ ଓ ଜଗନ୍ନାଥପୁରରେ ଅଭ୍ର ଓ ଉପରବିଷ ଓ ତବୁଡ଼ିରେ ଲୁହା ମିଳେ ।

କନ୍ଧମାଳ ସବ୍‌ଡିବିଜନରେ ବଣିପଡ଼ା ପ୍ରଧାନ ସ୍ଥାନ ଅଟେ । ସେହିଠାରେ କନ୍ଧମାନଙ୍କର ବସତି । ସେମାନେ ନିତାନ୍ତ ଅସଭ୍ୟ ଜାତି; ପୂର୍ବେ ପଏ ପିନ୍ଧୁଥିଲେ, ବର୍ତ୍ତମାନ କେହି୨ ଲୁଗା ପିନ୍ଧନ୍ତି ଓ ପାଠ ପଢ଼ନ୍ତି । ସେଠାରେ ସ୍ୱାସ୍ଥ୍ୟ ଭଲ ରହେ ନାହିଁ । ବଣିପଡ଼ାରେ କଚେରୀ, ଡାକଘର ଓ ଜେଲଖାନା ଅଛି ।

ଜିଲ୍ଲାର ଅଧିକାଂଶ ଘୋରଜଙ୍ଗଲ ଓ ହିଂସ୍ରଜନ୍ତୁରେ ପୂର୍ଣ୍ଣ; ହାତୀ, ବାଘ, ଭାଲୁ ଇତ୍ୟାଦି ଅନେକ ଅଛନ୍ତି ।

ଅନୁଗୁଳ ଛଡ଼ି ମୋଗଲବନ୍ଦୀର ତିନି ଜିଲ୍ଲାର ଅବସ୍ଥା ସମାନ ବୋଲିଯାଇପାରେ । ଏ ବିଭାଗରେ ସରକାରବାହାଦୁର ସମ୍ପୂର୍ଣ୍ଣ ମାଲିକ ଅଟନ୍ତି । ତାଙ୍କର ଆଇନ ସର୍ବତ୍ର ସମାନ ଭାବରେ ଚଳେ ଏବଂ ତାଙ୍କର କର୍ମ୍ମଚାରୀମାନେ ଲୋକଙ୍କ ହାଣି ଗୁହାରି ବୁଝନ୍ତି ଓ ଖଜଣା ଓସୁଲ

କରନ୍ତି ; ଲୋକଙ୍କର ଉପକାର ନିମିତ୍ତ ପ୍ରୟୋଜନ ଅନୁସାରେ ସଡ଼କ, ନାଲ, ଡାକ୍ତରଖାନା ଓ ସ୍କୁଲ ଇତ୍ୟାଦି କରିଦେଇଅଛନ୍ତି ଏବଂ ସକଳ ପ୍ରକାର ଅସୁବିଧା ଦୂର କରିବା ପାଇଁ ପ୍ରସ୍ତୁତ ଅଛନ୍ତି ।

ଅନଗୁଳ ଛାଡ଼ିଦେଲେ ମାନଚିତ୍ରରେ ଦେଖିବ ଯେ ମୋଗଲବନ୍ଦୀର ପୂର୍ବ ଭାଗରେ ବଙ୍ଗୋପସାଗର ସମୁଦ୍ର ଲାଗିଅଛି । ସମସ୍ତ ନଦୀମାନ ପଶ୍ଚିମ ଭାଗରୁ ତିନ ଜିଲ୍ଲା ମଧ୍ୟରେ ବହି ଆସି ଭିନ୍ନ ଭିନ୍ନ ସ୍ଥାନରେ ସମୁଦ୍ରରେ ମିଶିଅଛି । ପୁଣି ଦେଖିବ ପର୍ବତମାନ ପଶ୍ଚିମ ଭାଗରେ ଅଧିକ । ପୂର୍ବଭାଗ ପଶ୍ଚିମ ଅପେକ୍ଷା ନୀଚତର ; କ୍ରମଶଃ ଗଡ଼ାଣିଆ ହୋଇ ସମୁଦ୍ରଠାରେ ନୀଚତମ ହୋଇଅଛି ।

ଯେତେ ସ୍ଥଳ ବା ଜଳ ଅଛି ସର୍ବାପେକ୍ଷା ସମୁଦ୍ର ନିମ୍ନତମ । ସେହି ହେତୁରୁ କୌଣସି ଗ୍ରାମ, ନଗର, ପ୍ରଦେଶ ବା ପର୍ବତର ଉଚ୍ଚତା ପରିମାଣ କରିବାକୁ ହେଲେ ସମୁଦ୍ର ତଳରୁ ଅର୍ଥାତ୍ ସମୁଦ୍ରଠାରୁ ତାହା କେତେ ଉଚ୍ଚ ସ୍ଥିର କରିବାକୁ ହୁଏ । ସମୁଦ୍ରତଳ ସର୍ବତ୍ର ସମାନ ଥିବାରୁ ସେଠାରୁ କୌଣସି ପର୍ବତ କେତେ ଉଚ୍ଚ ବୋଲି କହିଲେ ସମସ୍ତେ ବୁଝିପାରିବେ ।

---

## ୧୭ଶ ପାଠ ।

ଅପର ପୃଷ୍ଠାରେ ଓଡ଼ିଶାର ମାନଚିତ୍ର ଦେଖ । ଓଡ଼ିଶା ଦୁଇ ଭାଗରେ ବିଭକ୍ତ, ଯଥା ମୋଗଲବନ୍ଦୀ ଓ ଗଡ଼ଜାତ । ଗଡ଼ଜାତରେ ସରକାର ବାହାଦୁରଙ୍କର ଆଇନ ଚଳେ ନାହିଁ । ଦେଶୀୟ ରାଜାମାନେ ନାଲିଶ ଶୁଣି ବିଚାର କରନ୍ତି ଏବଂ ଦୁଇ ବର୍ଷରୁ ଅଧିକ କାରାଦଣ୍ଡ ଓ ପ୍ରାଣଦଣ୍ଡ ଛାଡ଼ି ଆଉ ସମସ୍ତ ଦଣ୍ଡ ଦେଇ ପାରନ୍ତି । ଲୋକଙ୍କର ହିତପାଇଁ ତାବତୀୟ ଖରଚ ରାଜାମାନେ କରନ୍ତି । ସେମାନେ ସରକାର ବାହାଦୁରଙ୍କ ଅଧୀନ ଥାଇ ସାମାନ୍ୟ କର ଦିଅନ୍ତି ।




ଓଡ଼ିଶା ପ୍ରଦେଶର ମାନଚିତ୍ର ।

ମୋଗଲବନ୍ଦୀର ନଦୀମାନ ଗଡ଼ଜାତ ଆଡ଼ୁ ବହି ଆସିଅଛି । ଏ ବିଭାଗରେ ପାହାଡ଼ ପର୍ବତର ସଂଖ୍ୟା ମୋଗଲବନ୍ଦୀ ଅପେକ୍ଷା ଅତି ଅଧିକ । ପ୍ରତ୍ୟେକ ମାହାଲର ଅଧିକାଂଶ ଘୋରଜଙ୍ଗଲରେ ପୂର୍ଣ୍ଣ ଏବଂ ତହିଁରେ ଅନେକ ବନ୍ୟ ଜନ୍ତୁ, ମହାବଳ ବାଘ, କେନ୍ଦୁଆ, ଭାଲୁ, ବଳିଆ, ବରାହ, ହାତୀ, ଅରଣା, ଶମ୍ବର, ଗଧୂଲ, ହରିଣ, ହିଙ୍ଗ ଇତ୍ୟାଦି ଅଛନ୍ତି ଏବଂ ଗୋଖୁର, ତକ୍ଷ, ବୋଡ଼ା, ରଣା, ବାଗତଡ଼, ଅହିରାଜ ଇତ୍ୟାଦି ସାପ ଅଛନ୍ତି ।

ଗଡ଼ଜାତରେ ଅଧିକ ପାହାଡ଼ ପର୍ବତ ଥିବାରୁ ପଥୁରିଆ ଭୂମି ବା ଟାଙ୍ଗି ଅନେକ ଅଛି । ତହିଁରେ କୌଣସି ପ୍ରକାର ଫସଲ କରିବାର ସୁବିଧା ନାହିଁ । କୃଷିର ବିସ୍ତାର ଅତିଅଳ୍ପ କିନ୍ତୁ ନଦୀ ଓ ଝରର ଥିବା ଅଞ୍ଚଳମାନ ବିଶେଷ ଉର୍ବର ଅଟେ । କୃଷିର ବିଶେଷ ସୁବିଧା ନ ଥିଲେହେଁ ବନରେ ଆଉ ଅନେକ ପ୍ରକାର ଦ୍ରବ୍ୟ ମିଳେ ; ନାନା ସ୍ଥାନରୁ ମହାଜନମାନେ ଆସି ହାତୀଦାନ୍ତ, ମହୁ, ମହମ, ଚମଡ଼ା, ଶିଙ୍ଗ, ଟସର, ଝୁଣା, ଜଉ, ହରଡ଼ା, ବାହାଡ଼ା, ଅଁଳା, କୋଚିଲା ଓ ଖଇର ଇତ୍ୟାଦି କିଣି ନେଇଯାନ୍ତି । ସେହିସବୁ ଦ୍ରବ୍ୟ ଦ୍ୱାରା ଛତାବେଣ୍ଟ, ପଣାକାଠି, ବାଡ଼ି, ମଠାଲୁଗା, ଚମଡ଼ା କଷିବାର ଉପାଦାନ, ଜୋତା, ପେଟରା ଇତ୍ୟାଦି ତିଆରି ହୁଏ । କୋଠାଘରର କଡ଼ି, ବରଗା, କବାଟ, ଚଉକାଠ, ବେଞ୍ଚ, ମେଜ, ଚଉକି, ପଲଙ୍କ ହେବାକୁ ଯେଉଁ କାଠରେ ତିଆରି ହୁଏ ସେ ଗଛସବୁ ଗଡ଼ଜାତରେ ବହୁତ ଅଛି । ଶାଳ, ପିଆଶାଳ, ଶିଶୁ, ଶାଗୁଆନ, ଅସନ, କୁରୁମ ଇତ୍ୟାଦି ପ୍ରଧାନ ଅଟେ । ଅନେକ ମାହାଲରେ ଲୁହା, ପଥରକୋଇଲା, ମୁଗୁନିପଥର ଓ ଅଭ୍ର ମିଳେ ।

ଗଡ଼ଜାତର ଅନେକ ସ୍ଥାନରେ ଜଳବାୟୁ ଅତ୍ୟନ୍ତ ମନ୍ଦ । କନମାଳ ଓ ଆଉ କେତେ ସ୍ଥାନରେ ଶୀତଦିନେ ବରଫ ପଡ଼େ ।

ସମୁଦାୟ ଗଡ଼ଜାତ ମାହାଲର ପରିମାଣ ୧୪୩୮୭ ବର୍ଗମାଇଲ ଏବଂ

ଲୋକସଂଖ୍ୟା ପ୍ରାୟ ୧୭ ଲକ୍ଷ ହେବ । ତହିଁ ମଧ୍ୟରୁ ପ୍ରାୟ ୪ ଲକ୍ଷ ଜଙ୍ଗୁଆ ଜାତି, କନ୍ଧ, କୋଲ୍ଲ, ଭୂୟାଁ ଇତ୍ୟାଦି । ସେମାନେ ଘୋର-ଅରଣ୍ୟ ମଧ୍ୟରେ ଥାନ୍ତି, ଲୁଗାପଟା ପିନ୍ଧନ୍ତି ନାହିଁ । ମୋଗଲବନ୍ଦୀର ଭୂମି-ପରିମାଣ ଓ ଲୋକସଂଖ୍ୟା କେତେ ?

---

## ୧୮ଶ ପାଠ ।

ବାଲେଶ୍ୱର ସହର ଯେଉଁ ନଦୀ କୂଳରେ ସେହି ନଦୀର ପଶ୍ଚିମ ଦିଗରେ ଗଲେ ବାରିପଦା । ସେହି ସହର ମୟୂରଭଞ୍ଜର ରାଜଧାନୀ ; ସେଠାରେ ରାଜାଙ୍କ ନଅର, କଚେରୀ ଏବଂ ଏଣ୍ଟ୍ରାନ୍ସସ୍କୁଲ ଅଛି । ସେହିଠାରୁ ଆଉ ପଶ୍ଚିମକୁ ଗଲେ ସିମୁଳିପାଳ ପର୍ବତ ; ତହିଁରୁ ଏକ କ୍ଷୁଦ୍ର ସ୍ରୋତ ବହି ଆସି-ଅଛି ; ଏବଂ ବାଟରେ ଭିନ୍ନ ଭିନ୍ନ ଦିଗରୁ ଆଉ କେତେଗୁଡ଼ିଏ ସ୍ରୋତ ଆସି ମିଶିଅଛି । ସେଥିଯୋଗେ ମୂଳ ଧାରର ଓସାର କ୍ରମେ ବଢ଼ି ବଢ଼ି ବଲଙ୍ଗା ନଦୀ ନାମରେ ପ୍ରବାହିତ ହୋଇଅଛି । ସିମୁଳିପାଳ ପର୍ବତ ବଲଙ୍ଗାର ଉତ୍ପତ୍ତି-ସ୍ଥାନ । ନଦୀର ପ୍ରଥମ ଧାର ଯେଉଁଠାରୁ ବାହାରି ଥାଏ ତାହାକୁ ଉତ୍ପତ୍ତି-ସ୍ଥାନ ବୋଲନ୍ତି । ସେହିଠାରୁ ମୁହାଣ ଆଡ଼କୁ ଗଲେ ଡାହାଣ ଆଡ଼କୁ ନଦୀର ଦକ୍ଷିଣ ପାର୍ଶ୍ୱ ଏବଂ ବାଁଆଡ଼କୁ ବାମ ପାର୍ଶ୍ୱ ବୋଲନ୍ତି । ସୁବର୍ଣ୍ଣରେଖା ନଦୀ ଏହି ରାଜ୍ୟ ବାଟେ ବହି ଆସିଅଛି । ମହାରାଜା ବାରିପଦାକୁ ରେଲ-ବାଟ କରି ଅଛନ୍ତି । ରାଜ୍ୟରେ ୫ ଗୋଟି ପର୍ବତ ଅଛି ; ସିମୁଳିପାଳ, ମୁରାର, ଆମ୍ବଯୋଡ଼ି, ବାଘମାର ଓ ମେଘାସନୀ । ମାଣକି ଗ୍ରାମରେ ଏକ ପ୍ରସିଦ୍ଧ ଶିବମନ୍ଦିର ଏବଂ ଖିଚିଙ୍ଗରେ କୀଚକେଶ୍ୱରୀଙ୍କ ମନ୍ଦିର ଅଛି । ଓଲମରା ଝରର ନିମନ୍ତେ ବିଖ୍ୟାତ ଅଟେ । ବର୍ତ୍ତମାନ ମହାରାଜାଙ୍କ ସୁଶା-ସନ ଯୋଗେ ରାଜ୍ୟର ବିଶେଷ ଉନ୍ନତି ହୋଇଅଛି । ରାଜ୍ୟର କୌଣସି କୌଣସି ସ୍ଥାନରେ ଲୁହା ମିଳେ ।

ମୟୂରଭଞ୍ଜର ଦକ୍ଷିଣ ଓ ବାଲେଶ୍ୱରର ଜିଲ୍ଲାର ପଶ୍ଚିମ ସୀମାକୁ ଲାଗି ନୀଳଗିରି । ସେହି କ୍ଷୁଦ୍ର ରାଜ୍ୟରେ ନୀଳଗିରି ପର୍ବତ ଅଛି । ଖଡ୍ଗପୁରରେ ମୁଗୁନିପଥରର ଖଣି ଅଛି; ତାହା କଳା ଚିକ୍କଣ ପଥର । ତହିଁରେ ଉତ୍କୃଷ୍ଟ ବାସନ ଓ ହୁକା ଇତ୍ୟାଦି ତିଆରି କରି ସେଠାର ଲୋକେ ନାନାସ୍ଥାନରେ ନେଇ ବିକ୍ରୟ କରନ୍ତି ।

ମୟୂରଭଞ୍ଜର ଦକ୍ଷିଣ-ପଶ୍ଚିମ ଓ ନୀଳଗିରିର ପଶ୍ଚିମସୀମାକୁ ଲାଗି କେନ୍ଦୁଝର ରାଜ୍ୟ । ତହିଁର ରାଜଧାନୀ କେନ୍ଦୁଝର । ସେଠାରେ ପିତ୍ତଳର ଅତି ଉତ୍କୃଷ୍ଟ ତାର ତିଆରି ହୁଏ । ଜଳବାୟୁ ଅତ୍ୟନ୍ତ ମନ୍ଦ । ଆନନ୍ଦପୁର ଏକ ପ୍ରଧାନ ଗ୍ରାମ ଅଟେ । ଗନ୍ଧମାଦନ, ଠାକୁରାଣୀ ଓ ଗୋନାସିକା ନାମରେ ୩ ଗୋଟି ପର୍ବତ ଅଛି । ଗୋନାସିକାକୁ ବୈତରଣୀ ନଦୀର ଉତ୍ପତ୍ତିସ୍ଥାନ ବୋଲନ୍ତି । ଖଣ୍ଡଧାରଠାରେ ଅତି ଉଚ୍ଚ ସ୍ଥାନରୁ ଜଳଧାରା ବରାବର ଅତି ନୀଚ ସ୍ଥଳରେ ପଡୁଅଛି ଏବଂ ସେଥିଯୋଗେ ଗମ୍ଭୀରଶବ୍ଦ ଦୂରକୁ ଶୁଭେ । ଯେଉଁଠାରେ ସେହିପରି ଉଚ୍ଚରୁ ନୀଚକୁ ଜଳ ପଡୁଥାଏ ତାହାକୁ ଜଳପ୍ରପାତ ବୋଲନ୍ତି । ଖଣ୍ଡଧାର ଏକ ଜଳପ୍ରପାତ । କେନ୍ଦୁଝରର ପଶ୍ଚିମସୀମାକୁ ଲାଗି ପାଲଲହଡ଼ା । ପୂର୍ବେ ତାହା କେନ୍ଦୁଝରର ଅନ୍ତର୍ଗତ ଥିଲା; ଅଳ୍ପଦିନ ହେଲା ସ୍ୱାଧୀନ ରାଜ୍ୟ ହୋଇଅଛି । ତହିଁରେ ମଲୟଗିରି ଉଚ୍ଚତମ ପର୍ବତ ଅଟେ ।

ପାଲଲହଡ଼ାର ପୂର୍ବ ଓ କେନ୍ଦୁଝରର ଦକ୍ଷିଣସୀମାକୁ ଲାଗି ଢେଙ୍କାନାଳ ରାଜ୍ୟ । ରାଜଧାନୀ ଢେଙ୍କାନାଳଠାରେ ରାଜାଙ୍କ ନଅର, କଚେରୀ ଏବଂ ଏଣ୍ଟ୍ରାନ୍ସ ସ୍କୁଲ ଅଛି । ସେଠାରୁ ପ୍ରାୟ ୧୦ ମାଇଲ ଦୂରରେ କପିଳାସ ବୋଲି ଏକ ଉଚ୍ଚ ପର୍ବତ ଅଛି । ତହିଁରେ ଚନ୍ଦ୍ରଶେଖର ମହାଦେବଙ୍କ ମନ୍ଦିର ଅଛି ଏବଂ ଶୃଙ୍ଗରେ ଏକ ପ୍ରାଚୀନ ଦୁର୍ଗର ଚିହ୍ନ ଦେଖାଯାଏ । ସେଠାରେ ଏକ ନିର୍ଝରର ଜଳ ଅତି ସ୍ୱଚ୍ଛ ଏବଂ ସ୍ୱାସ୍ଥ୍ୟକର । ତାହାତୁଲ୍ୟ ସ୍ୱାସ୍ଥ୍ୟକର ସ୍ଥାନ ଆଉ ଓଡ଼ିଶାରେ ନାହିଁ । ଢେଙ୍କାନାଳର ଦକ୍ଷିଣସୀମାକୁ

ଲାଗି ତାଲଚେର । ସେଠାରେ ପଥରକୋଇଲା ଓ ଲୁହାର ଖଣି ଅଛି ଏବଂ କମାରମାନେ ଉତ୍କୃଷ୍ଟ କଟୁରୀ, ଗୁପ୍ତୀ ଇତ୍ୟାଦି ଶସ୍ତ୍ର ତିଆରି କରନ୍ତି ।

ଅନୁଗୁଳର ପୂର୍ବସୀମାକୁ ଲାଗି ହିନ୍ଦୋଳ । ତାହାର ରାଜଧାନୀ ହିନ୍ଦୋଳ, ସେ ରାଜ୍ୟରେ ମଧୁର କମଳାଲେମ୍ବୁ ମିଳେ । ତାହାର ପୂର୍ବ-ସୀମାକୁ ଅଠଗଡ଼ ଲାଗିଅଛି । ତାହାର ଦକ୍ଷିଣ-ପଶ୍ଚିମରେ ଟିଗିରିଆ କ୍ଷୁଦ୍ରତମ ମାହାଲ ଅଟେ ; ସେହି ରାଜ୍ୟର ନୂଆପାଟଣା ଗ୍ରାମରେ ଉତ୍କୃଷ୍ଟ ଟସର ଓ ଖଣ୍ଡୁଆ ମିଳେ ।

ହିନ୍ଦୋଳର ଦକ୍ଷିଣସୀମାକୁ ବଡ଼ମ୍ବା ଲାଗିଅଛି । ସେହି ରାଜ୍ୟ ବାଟେ ମହାନଦୀ ବହି ଆସିଅଛି । ନଦୀ ମଧ୍ୟରେ ଏକ ପାହାଡ଼ ଉପରେ ସିଂହନାଥଙ୍କର ପ୍ରସିଦ୍ଧ ମନ୍ଦିର ଅଛି । ମାଣିବନ୍ଧ ଗ୍ରାମରେ ମାଣିଆବନ୍ଧୀ ଲୁଗା ବୁଣା ହୁଏ । ବଡ଼ମ୍ବାର ପଶ୍ଚିମ ସୀମାକୁ ନରସିଂହପୁର ଲାଗିଅଛି ; ତାହାର ରାଜଧାନୀ ନରସିଂହପୁର ।

ମହାନଦୀର ବାମପାର୍ଶ୍ୱରେ ବଡ଼ମ୍ବା ଓ ନରସିଂହପୁର ଏବଂ ଦକ୍ଷିଣ ପାର୍ଶ୍ୱରେ ଖଣ୍ଡପଡ଼ା । ସେହି ରାଜ୍ୟରେ ମହାନଦୀକୂଳରେ କଣ୍ଟିଲୋଗ୍ରାମରେ ଥଟାରୀମାନେ ଉତ୍ତମ ବାସନ ତିଆରି କରନ୍ତି । ସେହି ନଦୀକୂଳରେ ପଦ୍ମାବତୀ ଗ୍ରାମ ଏକ ପ୍ରଧାନ ବାଣିଜ୍ୟସ୍ଥଳୀ ଅଟେ । ସେହି ରାଜ୍ୟରେ ଚନ୍ଦ୍ରଶେଖର ସିଂହ ମହାମହୋପାଧ୍ୟାୟ ଜନ୍ମଗ୍ରହଣ କରିଥିଲେ । ଖଣ୍ଡ-ପଡ଼ାର ପଶ୍ଚିମସୀମାକୁ ଲାଗି ଦଶପଲ୍ଲା । ତାହାର ରାଜଧାନୀ କୁଞ୍ଜବନ । ଜଗନ୍ନାଥମହାପ୍ରଭୁଙ୍କ ରଥ ତିଆରି ହେବାପାଇଁ ସେହି ରାଜ୍ୟରୁ କାଠ ଆସେ । ବର୍ଷାକାଳରେ କାଠପଟାଳୀମାନ ନଦୀରେ ନେଇ ସହଜରେ ନାହୁଡ଼ିମାନେ ପୁରୀରେ ପହଞ୍ଚାଇଦିଅନ୍ତି । ସେହି ରାଜ୍ୟର ପଶ୍ଚିମସୀମାକୁ ଲାଗି ବୌଦ । ତାହାର ରାଜଧାନୀ ବୌଦ । ତହିଁ ମଧ୍ୟରେ ବାଙ୍କମୁଣ୍ଡି, ସୁମିହା ଓ ସିପ୍ଲାଲିଙ୍ଗ ପର୍ବତମାନ ଅଛି । ବୌଦର ଉତ୍ତରସୀମାରେ

ମହାନଦୀ ପାରହେଲେ ଆଠମଲ୍ଲିକ । ସେହି ରାଜ୍ୟରେ ପଞ୍ଚଧାର ପର୍ବତ ଏବଂ କେତୋଟିଏ ପ୍ରସ୍ରବଣ ଅଛି ।

ଖଣ୍ଡପଡ଼ାର ଦକ୍ଷିଣ ଓ ଦଶପଲ୍ଲାର ଦକ୍ଷିଣ-ପଶ୍ଚିମକୁ ଲାଗି ନୟାଗଡ଼ । ସେହି ରାଜ୍ୟର ଭୂମି ଉର୍ବରା ଅଟେ ; ଇଟାମାଟୀ ଗ୍ରାମ ଏକ ବାଣିଜ୍ୟ-ସ୍ଥଳୀ । ସୁଳିଆ ନାମରେ ଏକ ଉଚ୍ଚ ପର୍ବତ ଅଛି । ନୟାଗଡ଼ର ପୂର୍ବ ଓ ପୁରୀ ଜିଲ୍ଲାର ପଶ୍ଚିମସୀମା ମଧ୍ୟରେ ରଣପୁର । ସେ ରାଜ୍ୟରେ ଅତି ଉତ୍କୃଷ୍ଟ ଲୁଗା ବୁଣା ହୁଏ ; ତାହାକୁ ରଣପୁରୀ ଲୁଗା ବୋଲାଯାଏ ।

---

## ୧୯ଶ ପାଠ ।

ଓଡ଼ିଶା କହିଲେ ସମସ୍ତ ଗଡ଼ଜାତମାହାଲମାନ ଓ ମୋଗଲବନ୍ଦୀ ଜାଣିବାକୁ ହେବ । ଅନେକଗୁଡ଼ିଏ ଜିଲ୍ଲା ଯେତେ ଗୋଟିଏ ପ୍ରଦେଶ ଗଠିତ ହୁଏ । ଓଡ଼ିଶା ଏକ ପ୍ରଦେଶ । ତାହାର ପୂର୍ବସୀମା ବଙ୍ଗୋପସାଗର, ଉତ୍ତରସୀମା ବଙ୍ଗ ପ୍ରଦେଶ, ପଶ୍ଚିମସୀମା ମଧ୍ୟପ୍ରଦେଶ ଓ ଦକ୍ଷିଣସୀମା ମାନ୍ଦ୍ରାଜବିଭାଗ । ତାହାର ଉତ୍ତର-ଦକ୍ଷିଣରେ ପ୍ରାୟ ୧୩୦ କ୍ରୋଶ ଓ ପୂର୍ବ-ପଶ୍ଚିମରେ ପ୍ରାୟ ୮୫ କ୍ରୋଶ ହେବ ; ଭୂମି ପରିମାଣ ୨୪୧୭୫ ବର୍ଗ ମାଇଲ । ତୁମ୍ଭର ଘର ଯେଉଁ ଜିଲ୍ଲାରେ ତାହାର ପରିମାଣ କେତେ ? ଓଡ଼ିଶାର ଲୋକସଂଖ୍ୟା ୫୨୪୪୦୭୬ ; ତୁମ୍ଭ ଜିଲ୍ଲାର ଲୋକସଂଖ୍ୟାଠାରୁ କେତେ ଗୁଣ ଅଧିକ ? ଗଡ଼ଜାତ ପାହାଡ଼, ପର୍ବତ ଓ ଜଙ୍ଗଲରେ ପରିପୂର୍ଣ୍ଣ ଥିବାରୁ ସେଠାରେ ଅଧିକ ଲୋକଙ୍କର ବାସ ନାହିଁ ; ମୋଗଲବନ୍ଦୀରେ ଅଧିକ ଲୋକଙ୍କର ବାସ । ଯେଉଁଠାରେ ହିଂସ୍ର ଜନ୍ତୁଙ୍କ ଭୟ ନାହିଁ, ଭୂମି ଉର୍ବରା ଓ ଦେହ ସୁସ୍ଥ ରହେ ସେହିଠାରେ ବାସ କରିବା ମନୁଷ୍ୟର ସ୍ୱଭାବ । ତଳମାଳର ଅଧିକାଂଶ ସ୍ଥାନ, ସମୁଦ୍ରର ଉପକୂଳବର୍ତ୍ତୀ ସ୍ଥାନ-ମାନ ଅସ୍ୱାସ୍ଥ୍ୟକର ଥିବାରୁ ମୋଗଲବନ୍ଦୀର ଅନ୍ୟାନ୍ୟ ଅଂଶ ଅପେକ୍ଷା ସେଠାରେ ଅଳ୍ପ ଲୋକଙ୍କର ବାସ ଅଛି ।

ଓଡ଼ିଶାର ନଦୀମାନ ପଶ୍ଚିମ ଦିଗରୁ ପୂର୍ବକୁ ବହିଯାଇଅଛି ; ସେଥିପାଇଁ ସେଗୁଡ଼ିକୁ ପୂର୍ବବାହିନୀ ବୋଲନ୍ତି । ସେଥିରେ ସବୁ ଋତୁରେ ଜଳ ରହେ ନାହିଁ ଓ ନୌକା ଚଳିପାରେ ନାହିଁ ; ଗ୍ରୀଷ୍ମକାଳରେ କେବଳ ବାଲୁକାମୟ ହୋଇଥାଏ । କିନ୍ତୁ ବର୍ଷାକାଳରେ ନୌକାଦ୍ୱାରା ଯିବା ଆସିବାର ସୁବିଧା ହୁଏ । ମହାନଦୀ ଯେଉଁସବୁ ଗଡ଼ଜାତମାହାଲ ବାଟେ ଆସିଅଛି ସେଠାରୁ ବହୁପରିମାଣ କାଠ, ବାଉଁଶ, ବନଜାତ ଦ୍ରବ୍ୟସମୂହ ଏବଂ ଧାନ, ଚାଉଳ ଓ ରବି ଇତ୍ୟାଦି ନୌକାରେ ଭିନ୍ନ ୨ ସ୍ଥାନକୁ ଆସେ । ବାଣିଜ୍ୟର ସୁବିଧା ଅନ୍ୟ ଋତୁରେ ଆଦୌ ନାହିଁ । ସରକାରବାହାଦୁର ନାଲମାନ ଖୋଲାଇଥିବାରୁ ବାଣିଜ୍ୟର ଅନେକ ବାଧା ବିଘ୍ନ ଦୂର ହୋଇ-ଅଛି । ୬ ବର୍ଷ ହେଲା ରେଲବାଟ ଫିଟିବାରୁ ଦୂରତର ସ୍ଥାନକୁ ଗମନାଗମନ କରିବାର ବିଶେଷ ସୁବିଧା ହୋଇଅଛି ।

ଯାତାୟାତର ସୁବିଧା ନିମନ୍ତେ ଦୟାଳୁ ସରକାରବାହାଦୁରଙ୍କ ଯତ୍ନରେ କେତେଗୁଡ଼ିଏ ବଡ଼ ପକ୍କାସଡ଼କ ପ୍ରସ୍ତୁତ ହୋଇଅଛି, ତନ୍ମଧ୍ୟରେ ଜଗନ୍ନାଥସଡ଼କ ପ୍ରଧାନ ଅଟେ । ତାହା ପୁରୀଠାରୁ କଟକ ଓ ବାଲେଶ୍ୱର ଜିଲ୍ଲା ମଧ୍ୟରେ ବଙ୍ଗ ଦେଶକୁ ଯାଇଅଛି । ଆଉ ଗୋଟିଏ ସଡ଼କ କଟକଠାରୁ ଖୋରଧା ଓ ଗଞ୍ଜାମ ବାଟେ ମାନ୍ଦ୍ରାଜକୁ ଯାଇଅଛି । ରେଲ ହେବା ପୂର୍ବେ ଅନେକ ମନୁଷ୍ୟ ଓ ଶକଟ ଇତ୍ୟାଦି ଯିବା ଆସିବା କରୁଥିଲେ ଓ ଯାତ୍ରୀମାନଙ୍କ ରହିବା ପାଇଁ ଚଟିଘର ଓ ବଜାରମାନ ଥିଲା । ଆଉ ଏକ ସଡ଼କ କଟକଠାରୁ ଆଠଗଡ଼, ଢେଙ୍କାନାଳ, ହିନ୍ଦୋଳ ଓ ଅନୁଗୁଳ ବାଟେ ସମ୍ବଲପୁରକୁ ଯାଇଅଛି ଏବଂ ସେହିଠାରୁ ଆଉ ଏକ ସଡ଼କ ମହାନଦୀର ଦକ୍ଷିଣପାର୍ଶ୍ୱରେ ଖଣ୍ଡପଡ଼ା, ଦଶପଲ୍ଲା ଓ ବୌଦ୍ଧ ବାଟେ ଯାଇଅଛି । ପୁଣି ସମ୍ବଲପୁରଠାରୁ ଏକ ସଡ଼କ ପାଲଲହଡ଼ା, କେନ୍ଦୁଝର ଓ ମୟୂରଭଞ୍ଜ ବାଟେ ବଙ୍ଗଦେଶର ମେଦିନୀପୁର ଜିଲ୍ଲାକୁ ଯାଇଅଛି ।

ସର୍ବପ୍ରଥମେ ଏ ଦେଶରେ ଓଡ଼୍ରମାନେ ଥିଲେ; ବହୁକାଳରୁ ଅନ୍ୟାନ୍ୟ ଜାତିର ଲୋକେ ଦୂରତର ସ୍ଥାନରୁ ଆସି ବାସ କରୁଅଛନ୍ତି । ପୂର୍ବେ ହିନ୍ଦୁରାଜାମାନେ ଓ ମୁସଲମାନ ବାଦସାହମାନେ ଶାସନ କରୁଥିଲେ; କିନ୍ତୁ ୧୮୦୩ ମସୀହାରେ ସାହେବମାନେ ଯୁଦ୍ଧରେ ଜୟୀ ହୋଇ ରାଜା ହେଲେ ଏବଂ ସେହି ବର୍ଷରୁ ଶାସନ କରୁଆସୁଅଛନ୍ତି ।

ଲୋକମାନେ ଅଧିକାଂଶ ହିନ୍ଦୁ—ପ୍ରାୟ ୮୦ ଲକ୍ଷ ହେବେ । ମୁସଲମାନମାନଙ୍କର ସଂଖ୍ୟା ପ୍ରାୟ ୬ ସହସ୍ର; ଖ୍ରୀଷ୍ଟିୟାନ ପ୍ରାୟ ୪ ସହସ୍ର; ଅବଶିଷ୍ଟ ଲୋକେ ଅସଭ୍ୟଜାତି,—କନ୍ଧ, ସାନ୍ତାଳ, କୋହ୍ଲ, ଭୂୟାଁ, ଜୁଆଙ୍ଗ, ଖଯୁର, ପାଗୁଆ ଇତ୍ୟାଦି ।

ସନ ୧୯୦୫ ମସୀହା ଅକ୍ଟୋବର ତା ୧୬ ରିଖଠାରୁ ସମ୍ବଲପୁର ଜିଲ୍ଲା ଓଡ଼ିଶା ସଙ୍ଗେ ମିଶିଅଛି । ପୂର୍ବେ ତାହା ମଧ୍ୟପ୍ରଦେଶ ମଧ୍ୟରେ ଥିଲା । ସେ ଜିଲ୍ଲାର ଲୋକେ ଓଡ଼ିଆ ଏବଂ ସମସ୍ତେ ଓଡ଼ିଆଭାଷା କହନ୍ତି । ତହିଁର ପ୍ରଧାନ ନଗର ସମ୍ବଲପୁର ମହାନଦୀକୂଳରେ ଅଛି । ସେଠାରେ ଅଦାଲତ ଓ ଏଣ୍ଟ୍ରାନ୍ସ ସ୍କୁଲ, ବଡ଼ ଡାକ୍ତରଖାନା ଓ ଡାକଘର ଅଛି । ସେଠାରୁ କଟକ ପର୍ଯ୍ୟନ୍ତ ମହାନଦୀରେ ନୌକାଦ୍ୱାରା ଚାଉଳ, ଖାର, ମୁଗ, ହରଡ଼ ଇତ୍ୟାଦି ଦ୍ରବ୍ୟମାନ ମହାଜନମାନେ ନେଇ ଆସନ୍ତି । ତାହା କଟକଠାରୁ ବହୁଦୂର ହେଲେହେଁ ବର୍ଷାକାଳରେ ସ୍ରୋତ ଯୋଗେ ନୌକା ଅତି ଅଳ୍ପ ସମୟରେ ସେଠାରୁ ଆସି କଟକରେ ଲାଗେ ।

ସେହି ଜିଲ୍ଲାରେ ବରଗଡ଼ ଗୋଟିଏ ସବ୍‌ଡିଭିଜନ ସହର । ସେଠାରେ ମୁନ୍‌ସଫ ଓ ତହସିଲଦାରଙ୍କ କଚେରୀମାନ ଓ ମିଡଲ୍ ସ୍କୁଲ ଅଛି । ଅତାବିରା, ରେମୁଣ୍ଡା ଓ ବରପାଲି ତିନୋଟି ପ୍ରଧାନ ଗ୍ରାମ; ସେଠାରେ ସ୍କୁଲ ଓ ଡାକଘର ଅଛି । ବରପାଲିରେ ଜଣେ ଜମିଦାର ଅଛନ୍ତି ଏବଂ ତାଙ୍କର କଚେରୀ ଅଛି ଓ ରେଶମର ଉତ୍କୃଷ୍ଟ ଲୁଗା ପ୍ରସ୍ତୁତ ହୁଏ ।

ସେହି ଅକ୍ଟୋବର ତା ୧୬ ରଖେ କଳାହାଣ୍ଡି, ପାଟନା, ବାମଡ଼ା, ସୋନପୁର ଓ ରେଢ଼ାଖୋଲ ଗଡ଼ଜାତମାନ ଓଡ଼ିଶା ସଙ୍ଗେ ମିଶିଅଛି । ପୂର୍ବେ ଏମାନ ମଧ୍ୟପ୍ରଦେଶର ଅନ୍ତର୍ଗତ ଥିଲା । ଏଗୁଡ଼ିକୁ ଫିଉଡେଟରୀ ଷ୍ଟେଟ୍ ବୋଲନ୍ତି ଏବଂ ଏଠାର ରାଜାମାନଙ୍କର କ୍ଷମତା ମୟୂରଭଞ୍ଜ ଆଦି ଗଡ଼ଜାତର ରାଜାମାନଙ୍କ ଅପେକ୍ଷା ଅଧିକ ଅଟେ । ବାମଡ଼ାର ରାଜଧାନୀ ଦେବଗଡ଼ରେ ଜଳର କଳ, ବିଜୁଳୀର ଆଲୁଅ ଓ ତାରଖବରର ବନ୍ଦୋବସ୍ତ ଅଛି । ଆଉ ଦଓ୍ଟି ଗଡ଼ଜାତ, ଗାଙ୍ଗପୁର ଓ ବଣେଇ ମଧ୍ୟ ଓଡ଼ିଶା ସଙ୍ଗେ ଉକ୍ତ ତାରିଖରେ ମିଶିଅଛି ।

ଦିଆଶିଲ, କିରାସିନ ତେଲ ଭୁମ୍ଭ ପ୍ରଦେଶରେ ହୁଏ କି? ସେ ପଦାର୍ଥ-ମାନ ବିଦେଶରୁ ମହାଜନ କିଣି ଆଣି ଏଠାରେ ବିକ୍ରୟ କରନ୍ତି । ଘର୍ଷାରେ ଯେଉଁ ଲୁଗା ଧର ତାହା ମଧ୍ୟ ବିଦେଶରୁ ଆସେ । ସୁନା, ରୁପା, ତମ୍ବା, ଲୁହା, କାଗଜ ଇତ୍ୟାଦି ଭିନ୍ନ ୨ ସ୍ଥାନରୁ ଆସି ଓଡ଼ିଶାରେ ବିକ୍ରୟ ହୁଏ । ଭୁମ୍ଭ ପ୍ରଦେଶରୁ ବିଦେଶକୁ ବା ଅନ୍ୟ ପ୍ରଦେଶକୁ କଅଣ ଯାଏ? ଧାନ ଓ ଚାଉଳ ଲକ୍ଷ ୨ ଟଙ୍କା ମୂଲ୍ୟର ପ୍ରତିବର୍ଷ ମହାଜନମାନେ କିଣି ନେଇଯାନ୍ତି । ଗଡ଼ଜାତ ଅଞ୍ଚଳରୁ ଚମଡ଼ା, ଶିଙ୍ଗ ଓ ହାଡ଼ ଇତ୍ୟାଦି ଅନେକ ବିଦେଶକୁ ଯାଏ । ଗଡ଼ଜାତ ରାଜାମାନେ ବିଦେଶୀୟ ମହାଜନମାନଙ୍କଠାରୁ ସାମାନ୍ୟ ଟଙ୍କା କର ସ୍ୱରୂପ ନେଇ ଛାଡ଼ି ଦିଅନ୍ତି ।

---

## ୨୦ଶ ପାଠ ।

ବାଲେଶ୍ୱର ଜିଲ୍ଲାର ଉତ୍ତରସୀମାକୁ ମେଦିନୀପୁର ଜିଲ୍ଲାର ଦକ୍ଷିଣସୀମା ଲାଗିଅଛି । ତାହା ବଙ୍ଗ ପ୍ରଦେଶର ଅନ୍ତର୍ଗତ । ବଙ୍ଗ ପ୍ରଦେଶ ଓଡ଼ିଶା-ଠାରୁ ଅନେକଗୁଣ ବଡ଼ । ତାହାର ପରିମାଣ ଓ ଲୋକସଂଖ୍ୟା ଅଧିକ, ଓଡ଼ିଶାରେ ଯେମନ୍ତ ଜଣେ କମିଶ୍ନର, ସେହିପରି ସେ ପ୍ରଦେଶରେ ୨ ଜଣ ଅଛନ୍ତି ; ପ୍ରେସିଡେନ୍ସି ଓ ବର୍ଦ୍ଧମାନ ; ବଙ୍ଗର ଉତ୍ତରରେ ବିହାର ପ୍ରଦେଶ ।

ସେଠାରେ ପାଟନା ଓ ଭାଗଲପୁରରେ ଦୁଇ ଜଣ କମିଶନର ଅଛନ୍ତି; ଛୋଟନାଗପୁରରେ ଜଣେ କମିଶନର ଅଛନ୍ତି ।

ବଙ୍ଗ ପ୍ରଦେଶର ଲୋକେ ବଙ୍ଗଳାଭାଷା କହନ୍ତି । ତାହା ଓଡ଼ିଆ କଥାଠାରୁ ବିଶେଷ ପୃଥକ୍ ନୁହେ; କିନ୍ତୁ ବଙ୍ଗଳା ଅକ୍ଷର ସମ୍ପୂର୍ଣ୍ଣରୂପେ ଅନ୍ୟ ପ୍ରକାର । ବଙ୍ଗର ଲୋକେ-ବଙ୍ଗାଳୀମାନେ ବିଶେଷ ଧନୀ, ସମୃଦ୍ଧି-ଶାଳୀ ଏବଂ ଅନେକେ ଉଚ୍ଚଶିକ୍ଷା ଲାଭ କରିଅଛନ୍ତି । ଓଡ଼ିଶା ପରି ସେଠାରେ ପାହାଡ଼ ପର୍ବତ ନାହିଁ, ଅଟବୀ ନାହିଁ କହିଲେ ଚଳେ; କିନ୍ତୁ ବହୁ ୨ ନଦୀ, ଉପନଦୀ ଓ ଶାଖାନଦୀମାନ ଅଛି । ନଦୀର ପଲ୍ଲିମାଟି ଯୋଗେ ସେ ପ୍ରଦେଶର ଭୂମି ଉତ୍କୃଷ୍ଟ ଏବଂ ଭାରତବର୍ଷରେ ସର୍ବାପେକ୍ଷା ଅଧିକତମ ଉର୍ବର । କୃଷକମାନେ ସୁଖେ ବର୍ଷକ ଭାତ ଖାଇ କିଛି ସଞ୍ଚୟ କରିପାରନ୍ତି । ପ୍ରାୟ ସକଳ ଋତୁରେ ଜଳର ସୁବିଧା ଥିବାରୁ ନାନା-ପ୍ରକାର ଫସଲ ସହଜରେ ହୁଏ; ଓଡ଼ିଶାରେ ଯେଉଁ ଚାଷ ହୁଏ ତାହା ଛଡ଼ା ଗହମ, ଅଫିମ ଓ ନୀଳର ଚାଷ ହୁଏ ଏବଂ ଓଡ଼ିଶା ଅପେକ୍ଷା ଅଧିକ ଧୂଆଁପତ୍ର ଓ ଝୋଟର ଚାଷ ହୁଏ ।

ବଙ୍ଗରେ ଅନେକ ନଦୀ ଓ ପ୍ରାୟ ସବୁ ନଦୀରେ ସର୍ବଦା ଜଳ ରହୁଥିବାରୁ ନୌକାଦ୍ୱାରା ଯାତାୟାତ କରିବାର ସୁବିଧା ଅଛି । ଅନେକ ସୁଦୀର୍ଘ ଓ ସୁଗମ ସଡ଼କମାନ ଅଛି । ପୁଣି ସରକାରବାହାଦୁର କେତେ ସ୍ଥାନରେ କଳ ଜାହାଜର ବନ୍ଦୋବସ୍ତ କରିଦେଇଅଛନ୍ତି । ଓଡ଼ିଶା ଅପେକ୍ଷା ବେଶୀ ରେଲବାଟ ଏବଂ ଅନେକ ଗ୍ରାମ ଓ ସହର ନିକଟରେ ଷ୍ଟେଶନ ଅଛି । ନଦୀମାନ ଓଡ଼ିଶାର ନଦୀପରି ଉତ୍ତର ଓ ପଶ୍ଚିମ ଭାଗରୁ ବହି ଆସି ପୂର୍ବଦିଗରେ ସମୁଦ୍ରରେ ପଡ଼ିଅଛି । ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର, ମେଘନା, ପଦ୍ମା ଇତ୍ୟାଦି ପ୍ରଧାନ ନଦୀ । ଗଙ୍ଗାସ୍ନାନ କରି ହିନ୍ଦୁମାନେ ପୁଣ୍ୟବାନ୍ ହୁଅନ୍ତି । ଗଙ୍ଗାର ମୁହାଣକୁ ଗଙ୍ଗାସାଗର ବୋଲନ୍ତି; ସେଠାରେ ବର୍ଷକେ ଥରେ ବୁଡ଼ ପଡ଼େ ଓ ମେଳା ହୁଏ ।




ବଙ୍ଗଦେଶ ପୂର୍ବ ବଙ୍ଗଦେଶ ଓ ଆସାମ ।

ବେହାରର ଲୋକମାନଙ୍କୁ ବେହାରୀ ବୋଲନ୍ତି । ସେମାନେ ହିନ୍ଦୁସ୍ଥାନୀ ଭାଷା କହନ୍ତି ଏବଂ ନାଗରୀ ଅକ୍ଷର ଲେଖନ୍ତି । ଓଡ଼ିଶାରେ ମଣଲା ଦୋକାନ, ମୁଦି ଦୋକାନ ଓ ଟଙ୍କା ମହାଜନୀ କରିବା ପାଇଁ ଆସି ଅନେକ ବେହାରୀ ଘରଦ୍ୱାର ଜମିବାଡ଼ୀ କରି ରହିଲେଣି । ଗଙ୍ଗା ଏହି ପ୍ରଦେଶ ବାଟେ ଆସି ବଙ୍ଗଆଡ଼େ ବହିଯାଇଅଛି । ବଙ୍ଗ ଅପେକ୍ଷା ତାହା ଉଚ୍ଚତର କିନ୍ତୁ ଉର୍ବ୍ବରତାରେ ନ୍ୟୂନ ଅଟେ

ଓଡ଼ିଶାର ଉତ୍ତର ଓ ବଙ୍ଗର ପଶ୍ଚିମସୀମାକୁ ଲାଗି ଛୋଟନାଗପୁର କ୍ଷୁଦ୍ରତମ ପ୍ରଦେଶ ଅଟେ । ତାହା ବିଶେଷ ସ୍ୱାସ୍ଥ୍ୟକର । ସେଠାରେ ଓଡ଼ିଶା ପରି ପାହାଡ଼, ପର୍ବ୍ବତ ଓ ଟାଙ୍ଗି ଅଛି ଏବଂ ଅଧିକାଂଶ ଜଙ୍ଗଲ । ଲୋକେ ହିନ୍ଦୀ ଭାଷା କହନ୍ତି ଓ ନାଗରୀ ଅକ୍ଷର ଲେଖନ୍ତି । ସୁବର୍ଣ୍ଣରେଖା ନଦୀ ସେହି ଆଡ଼ୁ ଓଡ଼ିଶାକୁ ବହିଆସିଅଛି ।

ବଙ୍ଗ, ବେହାର, ଓଡ଼ିଶା ଓ ଛୋଟନାଗପୁରକୁ ଘେନି ବଙ୍ଗ ବିଭାଗ ଗଠିତ ହୋଇଅଛି । ସମଗ୍ର ବିଭାଗର ଭଲମନ୍ଦ ବୁଝିବା ପାଇଁ ସରକାର ବାହାଦୁରଙ୍କର ଜଣେ ପ୍ରଧାନ କର୍ମ୍ମକର୍ତ୍ତା ଅଛନ୍ତି । ତାହାଙ୍କୁ ବଙ୍ଗ ବିଭା-ଗର ଲେଫ୍ଟନାଣ୍ଟ ଗବର୍ଣ୍ଣର ବୋଲାଯାଏ । ତାଙ୍କର ବ୍ୟବସ୍ଥା ଅନୁସାରେ ଶାସନକାର୍ଯ୍ୟ ଚଳେ । ସେ କଲିକତା ନିକଟରେ ଥାନ୍ତି ଏବଂ ସମୟ କ୍ରମେ ନାନାସ୍ଥାନ ଭ୍ରମଣ ଓ ପରିଦର୍ଶନ କରନ୍ତି ।

ବଙ୍ଗବିଭାଗର ରାଜଧାନୀ କଲିକତାମହାନଗରୀ ଗଙ୍ଗାର ଏକ ଶାଖା ହୁଗୁଲୀ ନଦୀ ଉପରେ ଅବସ୍ଥିତ । ସେଠାରେ ବଡ଼ଲାଟ ସାହେବଙ୍କ ଆବାସ ଓ ସବୁଠାରୁ ବଡ଼ କଚେରୀ ହାଇକୋର୍ଟ ଏବଂ କ୍ରୋଡ଼ପତି ମହାଜନ, ସଉଦାଗର ଓ ଦୋକାନଦାରମାନେ ଅଛନ୍ତି; ପୃଥିବୀର ସକଳ ଦେଶ ଓ ଜାତିର ଲୋକେ ଅଛନ୍ତି ଏବଂ ସକଳ ପ୍ରକାର ଦ୍ରବ୍ୟ ସେଠାରେ ମିଳେ । ନଗର ନିକଟରେ ଲୁଗା, ସୂତା, ପାଟ, ଚିନି, ମଇଦା

ଇତ୍ୟାଦିର ଅନେକ କଳ କାରଖାନା ଅଛି ଏବଂ ତହିଁରେ ଓଡ଼ିଶାର ସହସ୍ର ସହସ୍ର ଲୋକେ କାମ କରନ୍ତି । ନଦୀରେ ସର୍ବଦା ନାନା ବିଦେଶରୁ ଜାହାଜ ଆସି ରହିଥାଏ । ସରକାର ବାହାଦୁରଙ୍କର ଏକ କିଲ୍ଲା ଅଛି ; ତାହାର ନାମ ଫୋର୍ଟଉଇଲିୟମ୍ ; ତହିଁରେ ଅନେକ ସାହେବ ଓ ଦେଶୀୟ ସିପାହୀ ଥାନ୍ତି ।

ପ୍ରେସିଡେନ୍ସି ବିଭାଗର ଅନ୍ତର୍ଗତ ନଦୀୟା ଜିଲ୍ଲା ସୁବିଖ୍ୟାତ ଅଟେ । ସେହିଠାରେ ଚୈତନ୍ୟଦେବ ଜନ୍ମଗ୍ରହଣ କରିଥିଲେ ଏବଂ ତାହା ସଂସ୍କୃତ ବିଦ୍ୟାଚର୍ଚ୍ଚା ନିମିତ୍ତ ସର୍ବତ୍ର ପ୍ରସିଦ୍ଧ । ଓଡ଼ିଶାର କେତେ ବ୍ରାହ୍ମଣଛାତ୍ର ସଂସ୍କୃତ ଶିକ୍ଷା ପାଇଁ ସେଠାକୁ ଯାନ୍ତି ।

ଢାକା ବିଭାଗର ପ୍ରଧାନ ନଗର ଢାକା । ସେଠାରେ ବଣିଆମାନେ ରୁପାର ଉତ୍କୃଷ୍ଟ କାମଗରୀ କରନ୍ତି ଏବଂ ତନ୍ତିମାନେ ଅତି ସୂକ୍ଷ୍ମ ଲୁଗା ବୁଣନ୍ତି । ରାଜସାହୀ ଡିବିଜନରେ ଦାର୍ଜିଲିଂ ଏକ ପ୍ରସିଦ୍ଧ ସ୍ଥାନ ; ସେଠାକୁ ଯିବାକୁ ହେଲେ ରେଳଗାଡ଼ୀରେ ଚଢ଼ି ହିମାଳୟ ପର୍ବତର ଅନେକ ଉପରକୁ ଯିବାକୁ ହୁଏ । ଜଳବାୟୁ ଅତୀବ ସ୍ୱାସ୍ଥ୍ୟକର ଥିବାରୁ ଅନେକ ସାହେବ ଓ ଦେଶୀୟ ଧନୀ ବ୍ୟକ୍ତିମାନେ ସେଠାକୁ ଯାନ୍ତି ।

ବେହାର ପ୍ରଦେଶର ରାଜଧାନୀ ପାଟନା ଏବଂ ମୁର୍ଶିଦାବାଦ ଏକ ପ୍ରଧାନ ନଗର । ସେଠାରେ ଉତ୍ତମ ପାଟଲୁଗା ଏବଂ ଉତ୍କୃଷ୍ଟ ପିତ୍ତଳ ଓ କଂସାର ବାସନ ପ୍ରସ୍ତୁତ ହୁଏ । ମାଲଦାରେ ସୁମିଷ୍ଟ ଆମ୍ବ ମିଳେ ।

ଛୋଟନାଗପୁରର ପ୍ରଧାନ ନଗର ରାଞ୍ଚୀ ବିଶେଷ ସ୍ୱାସ୍ଥ୍ୟକର ସ୍ଥାନ ଅଟେ ।

ବଙ୍ଗ ବିଭାଗର ଉତ୍ତରସୀମା ହିମାଳୟ ପର୍ବତ ; ପୂର୍ବସୀମା ଆସାମ ଓ ବ୍ରହ୍ମଦେଶ ; ଦକ୍ଷିଣସୀମା ସମୁଦ୍ର ଓ ପଶ୍ଚିମସୀମା ମଧ୍ୟପ୍ରଦେଶ ଓ ସଂଯୁକ୍ତ ପ୍ରଦେଶ । ତାହାର ପରିମାଣଫଳ ଦୁଇ ଲକ୍ଷ ବର୍ଗମାଇଲରୁ

କରୁ ଉଣା ଏବଂ ଲୋକସଂଖ୍ୟା ୨½ କୋଟିରୁ ଅଧିକ ହେବ । ତହିଁ ମଧ୍ୟରେ ଏକ ତୃତୀୟାଂଶ ମୁସଲମାନ ଓ ଅବଶିଷ୍ଟ ଅଧିକାଂଶ ହିନ୍ଦୁ ।*

---

## ୧୯ଶ ପାଠ ।

ବଙ୍ଗ ଯେମନ୍ତ ଗୋଟିଏ ବିଭାଗ ତେମନ୍ତ ଆଉ କେତେଗୋଟି ବିଭାଗ ଯେଇ ଭାରତସାମ୍ରାଜ୍ୟ ଗଠିତ ହୋଇଅଛି । ବଙ୍ଗ ପରି ଆଗ୍ରା-ଅଯୋଧ୍ୟା ସଂଯୁକ୍ତ ପ୍ରଦେଶ; ପଞ୍ଜାବ, ପୂର୍ବବଙ୍ଗ—ଆଶାମ ଓ ବ୍ରହ୍ମଦେଶରେ ଜଣେ ଲେଖାଏଁ ଲେଫ୍ଟନାଣ୍ଟଗବର୍ଣ୍ଣର ଅଛନ୍ତି । ମାନ୍ଦ୍ରାଜ ଓ ବମ୍ବେଇ ବିଭାଗରେ ଜଣେ ଲେଖାଏଁ ଗବର୍ଣ୍ଣର ଅଛନ୍ତି; ସେମାନଙ୍କର କ୍ଷମତା ଲେଫ୍ଟନାଣ୍ଟ-ଗବର୍ଣ୍ଣରଙ୍କର ଅପେକ୍ଷା ଅଧିକ । ଆଶାମ, ମଧ୍ୟପ୍ରଦେଶ, ଆଜମିର ଓ ମୋରବାରା ଦୁର୍ଗ, ବ୍ରିଟିଶ ବେଲୁଚସ୍ଥାନ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, ଆନ୍ଦାମାନ ଓ ନିକୋବାର ଦ୍ୱୀପ ସମୂହରେ ଜଣେ ଲେଖାଏଁ ଚିଫ୍‌କମି-ଶନର ଅଛନ୍ତି ।

ଓଡ଼ିଶାର ଗଡ଼ଜାତମାହାଲ ପ୍ରାୟ ଅନେକଗୁଡ଼ିଏ ରାଜ୍ୟ ଅଛି । ସରକାରବାହାଦୁର ସାକ୍ଷାତ ଭାବରେ ତାହା ସବୁ ବୁଝାସୁଝା ନ କଲେହେଁ ତହିଁରେ ଦେଶୀୟ ରାଜାମାନେ କପରି କାର୍ଯ୍ୟନିର୍ବାହ କରନ୍ତି ତାହା ତଦାରଖ କରନ୍ତି । ତହିଁ ମଧ୍ୟରେ ନିମ୍ନଲିଖିତ ରାଜ୍ୟମାନ ପ୍ରଧାନ; ହାଇଦ୍ରାବାଦ, ଗ୍ୱାଲିୟର, ବରୋଦା, କାଶ୍ମୀର, ଇନ୍ଦୋର, ଜୟପୁର,

---

* ସନ ୧୯୦୫ ଅକ୍ଟୋବର ତା ୧୬ ରିଖଠାରୁ କେବଳ ଦାର୍ଜିଲିଂକୁ ଛାଡ଼ି ରାଜସାହି, ଢାକା ଓ ଚଟ୍ଟଗ୍ରାମ ବିଭାଗମାନ ବଙ୍ଗରୁ ବାହାର ଯାଇ ଆଶାମ ସଙ୍ଗେ ମିଶିବାରୁ ଏକ ନୂତନ ପ୍ରଦେଶ ଗଠିତ ହୋଇଅଛି । ସେ ପ୍ରଦେଶର ନାମ ପୂର୍ବବଙ୍ଗ ଓ ଆଶାମ; ତହିଁରେ ଜଣେ ଲେଫ୍ଟନାଣ୍ଟଗବର୍ଣ୍ଣର ନିଯୁକ୍ତ ହୋଇଅଛନ୍ତି ।

ଯୋଧପୁର, ଉଦୟପୁର, ମହୀଶୂର ଓ ତ୍ରିବାଙ୍କୁଡ଼ । ସମସ୍ତେ ସରକାର ବାହାଦୁରଙ୍କ ଅଧୀନ ଅଟନ୍ତି ।

ନେପାଳ ଓ ଭୂଟାନର ରାଜାମାନେ ସ୍ୱାଧୀନ ଅଟନ୍ତି ।

ଭାରତସାମ୍ରାଜ୍ୟର କେତେକ ସ୍ଥାନରେ ଇଂରେଜଙ୍କ ଛଡ଼ା ଅନ୍ୟ ଇଉରୋପୀୟ ଜାତମାନଙ୍କର ଅଧିକାର ଅଛି । ଚନ୍ଦନନଗର, ପଣ୍ଡିଚେରୀ ଓ ମାହେ ଫରାସୀମାନଙ୍କର ଅଧୀନ ଓ ପଣ୍ଡିଚେରୀରେ ଫରାସୀ ଗବର୍ଣ୍ଣର-ଜେନେରଲ୍ ଥାନ୍ତି । ଗୋଆ, ଦାମନ ଓ ଦିଉ ପର୍ତ୍ତୁଗିଜମାନଙ୍କ ଅଧୀନ ଓ ଗୋଆରେ ପର୍ତ୍ତୁଗିଜ ଗବର୍ଣ୍ଣର-ଜେନେରଲ୍ ଥାନ୍ତି ।

ଭାରତର ଆକାର କିପରି? ତିନକୋଣିଆ । ତାହାର ତିନଆଡ଼େ ସମୁଦ୍ର । ସେହିପରି ଯେଉଁ ସ୍ଥଳଭାଗର ତିନଆଡ଼େ ଜଳ ଥାଏ ତାହାକୁ ଉପଦ୍ୱୀପ ବୋଲନ୍ତି । ଭାରତ ଗୋଟିଏ ଉପଦ୍ୱୀପ । ତାହାର ଉତ୍ତରରେ ହିମାଳୟ ପର୍ବତ, ପୂର୍ବରେ ପୂର୍ବଉପଦ୍ୱୀପ ଓ ବଙ୍ଗୋପସାଗର, ଦକ୍ଷିଣରେ ଭାରତମହାସାଗର ଏବଂ ପଶ୍ଚିମରେ ଆରବସାଗର, ବେଲୁଚସ୍ଥାନ ଓ ଅଫଗାନସ୍ଥାନ ।

ହିମାଳୟ ପୃଥିବୀରେ ଉଚ୍ଚତମ ପର୍ବତ । ତାହାର ଶୃଙ୍ଗରେ ସର୍ବଦା ପର୍ବତ ଆକାରରେ ବରଫ ଜମା ହୋଇଥାଏ । ତାହାର ନିକଟବର୍ତ୍ତୀ ଅଞ୍ଚଳରେ ଅତିଶୟ ଶୀତ ହୁଏ । ପର୍ବତ ଦେହରେ ସିମଲା, ମିଶୋରୀ ଓ ନାଇନିତାଲ୍ ତିନୋଟି ଅତି ସ୍ୱାସ୍ଥ୍ୟକର ସ୍ଥାନ । ଆଉ ଏକ ପର୍ବତ ଭାରତର ମଧ୍ୟ ସ୍ଥଳରେ ଅଛି; ତାହାର ନାମ ବିନ୍ଧ୍ୟଗିରି । ତଦ୍ୱାରା ଦେଶ ଦୁଇ ଭାଗରେ ବିଭକ୍ତ ହୋଇଅଛି, ଉତ୍ତରକୁ ଆର୍ଯ୍ୟାବର୍ତ୍ତ ଓ ଦକ୍ଷିଣକୁ ଦାକ୍ଷିଣାତ୍ୟ ବୋଲନ୍ତି । ଅନ୍ୟାନ୍ୟ ପର୍ବତ ମଧ୍ୟରେ ଆରାବଲ୍ଲୀ, ପୂର୍ବଘାଟ ଓ ପଶ୍ଚିମଘାଟ ପ୍ରଧାନ ଅଟେ ।

ଆର୍ଯ୍ୟାବର୍ତ୍ତରେ ସିନ୍ଧୁ, ଗଙ୍ଗା ଓ ବ୍ରହ୍ମପୁତ୍ର ନଦୀମାନ ଅତି ବୃହତ୍ ଏବଂ ପ୍ରତ୍ୟେକର ଅନେକ ଲେଖାଏଁ ଉପନଦୀ ଓ ଶାଖାନଦୀ ଅଛି ।

ଦାକ୍ଷିଣାତ୍ୟରେ ନର୍ମ୍ମଦା, ଗୋଦାବରୀ, କୃଷ୍ଣା, କାବେରୀ ଓ ମହାନଦୀ ପ୍ରଧାନ ଅଟେ ।

ଭାରତର ଲୋକ ସଂଖ୍ୟା ପ୍ରାୟ ୩୦ କୋଟି, ଅଧିକାଂଶ ହିନ୍ଦୁ ଅଟନ୍ତି । ସକଳପ୍ରକାର ଧର୍ମ୍ମର ଲୋକେ ଅଛନ୍ତି କିନ୍ତୁ ହିନ୍ଦୁ, ମୁସଲମାନ ଓ ଖ୍ରୀଷ୍ଟିୟାନ ଦେଶର ପ୍ରଧାନ ଧର୍ମ୍ମ । ପ୍ରାୟ ଛଅଭାଗ ଲୋକେ କୃଷିକର୍ମ୍ମରେ କୁଟୁମ୍ବ ପୋଷନ୍ତି; ଅନ୍ୟ ବ୍ୟବସାୟ କରିବା ଲୋକଙ୍କ ସଂଖ୍ୟା ଅତିଅଳ୍ପ । ଧାନ, ଗହମ, ମଟର, ଚଣା, ଦେଶର ପ୍ରଧାନ ଖାଦ୍ୟ ଅଟେ ; କୃଷକମାନେ କେବଳ ସେହିଗୁଡ଼ିକ ପ୍ରତି ବିଶେଷ ଦୃଷ୍ଟି ରଖନ୍ତି । ଅନ୍ୟ ଶସ୍ୟ ମଧ୍ୟରେ କପା, ଝୋଟ, ଚା, ନୀଳ ପ୍ରଧାନ ; କିନ୍ତୁ ତାହା ସବୁ ସାହେବ ମହାଜନମାନେ ଟଙ୍କା ଦେଇ କରାନ୍ତି ; ଦେଶୀୟ ଲୋକେ କେବଳ ମୂଲ ଲାଗନ୍ତି । ବଙ୍ଗ ବିଭାଗରେ ପଥର କୋଇଲାର ଓ ମାନ୍ଦ୍ରାଜରେ ସୁବର୍ଣ୍ଣର ଖଣି ଅଛି ।

ଭାରତରୁ ଅଧିକ ପରିମାଣରେ ଗହମ, କପା, ଝୋଟ, ନୀଳ ଓ ଚମଡ଼ା ବିଦେଶକୁ ଯାଏ ଏବଂ ଲୁଗା, ଦିଆଶିଳି, ଛୁରୀ, କଇଞ୍ଚି, ଚମଡ଼ାର ଜିନିସ ଇତ୍ୟାଦି ବିଦେଶରୁ ଆସେ । ପୂର୍ବଭାଗରେ କଲିକତା, ପଶ୍ଚିମଭାଗରେ ବମ୍ବେଇ ଓ କରାଚି ଏବଂ ଦକ୍ଷିଣାଞ୍ଚଳରେ ମାନ୍ଦ୍ରାଜ ଓ ତୁତିକୋରିଣ ପ୍ରଧାନ ବନ୍ଦର ଅଟେ । କଲିକତା ପ୍ରାଣ୍ଡି ମାନ୍ଦ୍ରାଜ ଓ ବମ୍ବେଇରେ ଗବର୍ଣ୍ଣମେଣ୍ଟଙ୍କର କିଲ୍ଲା ଅଛି ଏବଂ ଅନେକ ସାହେବ ଓ ଦେଶୀୟ ସିପାହୀ ଥାନ୍ତି ।

ମାନ୍ଦ୍ରାଜ ବିଭାଗର ରାଜଧାନୀ ମାନ୍ଦ୍ରାଜ ସହର ; ସେଠାରେ ହାଇକୋର୍ଟ ଓ ବିଭାଗୀୟ ଗବର୍ଣ୍ଣମେଣ୍ଟଙ୍କର ଆବାସ ଅଛି । ବିଶାଖାପାଟଣା, ମସଲିପାଟଣା ଓ କୋକନଦ ଓ ବ୍ରହ୍ମପୁର* ପ୍ରଧାନ ବାଣିଜ୍ୟସ୍ଥାନ । ମଦୁରା ଏକ ପ୍ରାଚୀନ

---

* ବ୍ରହ୍ମପୁରର ଲୋକେ ଓଡ଼ିଆଭାଷା କହନ୍ତି ଏବଂ ଗୁମୁର ଜାତ—ଓଡ଼ିଆ । ସେମାନେ ମାନ୍ଦ୍ରାଜ ଗବର୍ଣ୍ଣମେଣ୍ଟଙ୍କ ଅଧୀନ ।

ସହର ; ସେଠାରେ ଗୋଟିଏ ଅତି ପ୍ରାଚୀନ ଓ ସୁନ୍ଦର ଦେଉଳ ଅଛି । ସେହି ବିଭାଗରେ ହିନ୍ଦୁମାନଙ୍କର ଅତି ପବିତ୍ର ଧାମ ସେତୁବନ୍ଧରାମେଶ୍ୱର ଅଛି ।

ବମ୍ବେଇବିଭାଗର ରାଜଧାନୀ ବମ୍ବେଇ ସହର ଭାରତର ସର୍ବାପେକ୍ଷା ବୃହତ୍ତର ବନ୍ଦର । ସେଠାରେ ହାଇକୋର୍ଟ ଏବଂ ଗବର୍ଣ୍ଣରଙ୍କର ଆବାସ ଅଛି । ପୁନା, ନାସିକ ଓ କରାଚି ପ୍ରଧାନ ନଗର ଅଟେ । ହିନ୍ଦୁମାନଙ୍କର ପବିତ୍ର ଧାମ ଦ୍ୱାରକା ବମ୍ବେଇ ବିଭାଗର ଅନ୍ତର୍ଗତ ।

ସଂଯୁକ୍ତ ପ୍ରଦେଶର ରାଜଧାନୀ ଏଲାହାବାଦ ଗଙ୍ଗା ଓ ଯମୁନାର ସଙ୍ଗମସ୍ଥାନରେ ଅବସ୍ଥିତ । ତାହାର ଅନ୍ୟ ନାମ ପ୍ରୟାଗ ; ହିନ୍ଦୁମାନଙ୍କର ତୀର୍ଥ । ସେଠାରେ ହାଇକୋର୍ଟ ଓ ଲେଫ୍ଟନାଣ୍ଟ ଗବର୍ଣ୍ଣରଙ୍କ ଆବାସ ଅଛି । ହିନ୍ଦୁମାନଙ୍କ ତୀର୍ଥସ୍ଥାନ କାଶୀ, ଅଯୋଧ୍ୟା, ମଥୁରା, ବୃନ୍ଦାବନ ଓ ହରଦ୍ୱାର ସେହି ବିଭାଗ ମଧ୍ୟରେ ; ଲକ୍ଷ୍ନୌ, କାନପୁର ଓ ଆଗ୍ରା ପ୍ରଧାନ ସହର ଅଟେ ।

ପଞ୍ଜାବ ପ୍ରଦେଶର ରାଜଧାନୀ ଲାହୋର । ତହିଁ ନିକଟରେ ଅମୃତସର ଶିଖଜାତିଙ୍କର ପବିତ୍ର ସ୍ଥାନ । ସେଠାରେ ଶାଲ ଓ ନାନାପ୍ରକାର ଉତ୍କୃଷ୍ଟ ଶୀତବସ୍ତ୍ର ପ୍ରସ୍ତୁତ ହୁଏ । ମୁଲତାନ, ଶିମଲା ଓ ଦିଲ୍ଲୀ ପ୍ରଧାନ ନଗର ।

ବ୍ରହ୍ମପ୍ରଦେଶର ରାଜଧାନୀ ରେଙ୍ଗୁନ ନଗର ନାନାପ୍ରକାର ଦ୍ରବ୍ୟର ବାଣିଜ୍ୟସ୍ଥାନ ଓ ବନ୍ଦର । ସେଠାରୁ ଅନେକ ପରିମାଣ ଚାଉଳ ବିଦେଶକୁ ଯାଏ । ମାନ୍ଦାଲେ, ଏକ୍ୟାବ, ପେଗୁ ଓ ମୌଲମୀନ ପ୍ରଧାନ ନଗର ।

ଆସାମ ପ୍ରଦେଶର ରାଜଧାନୀ ଶିଲଙ୍ଗ । ପ୍ରସିଦ୍ଧ କାମାଖ୍ୟା ଦେବୀଙ୍କ ମନ୍ଦିର ତାହାର ଅନ୍ତର୍ଗତ । ଶିଲହଟରେ ଚା ବଗିଚା ଅଛି ଏବଂ ଅତି ମଧୁର କମଳାଲେମ୍ବୁ ମିଳେ । ମଧ୍ୟପ୍ରଦେଶର ରାଜଧାନୀ ନାଗପୁର ଏବଂ ହିଙ୍ଗନହାଟ ଓ ରାଇପୁର ପ୍ରଧାନ ନଗର ଅଟନ୍ତି । କୁର୍ଗର ରାଜଧାନୀ ମର୍କରାରେ ଅନେକ ଅଳେଇଚ ଓ ଗୁଜରାତି ମିଳେ । ଆଜମୀର ଓ ମେରବାରାର ରାଜଧାନୀ ଆଜମୀର । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶର ପେଶାବର ଏବଂ

ବ୍ରିଟିଶ ବେଲୁଚସ୍ଥାନର କ୍ୱେଟା ରାଜଧାନୀ । ଆଣ୍ଡାମାନ ଓ ନିକୋବାର ଦ୍ୱୀପର ରାଜଧାନୀ ପୋର୍ଟବେୟାର ; ଅପରାଧୀମାନେ କଳାପାଣିଦଣ୍ଡ ପାଇଲେ ସେହିଠାକୁ ଯାନ୍ତି ।

ଉପରୋକ୍ତ ସମସ୍ତ ପ୍ରଦେଶଗୁଡ଼ିକୁ ନେଇ ଭାରତସାମ୍ରାଜ୍ୟ ଗଠିତ ହୋଇଅଛି । ତାହା ଜଣେ ରାଜପ୍ରତିନିଧିଙ୍କ ଦ୍ୱାରା ଶାସିତ ହୁଏ । ତାଙ୍କୁ ଗବର୍ଣ୍ଣର ଜେନେରଲ ବା ଭାଇସ୍‌ରୟ କହନ୍ତି । ତାଙ୍କ ସଭାରେ ପ୍ରସ୍ତୁତ ଆଇନମାନ ସମଗ୍ର ସାମ୍ରାଜ୍ୟରେ ଚଳେ ।

---

## ୨୨ଶ ପାଠ ।

ଭାରତବର୍ଷ ପରି ଆଉ କେତୋଟି ଦେଶ ନେଇ ଏଶିଆ ମହାଦେଶ ଗଠିତ ହୋଇଅଛି । ଯେଉଁ ସୁବିସ୍ତୀର୍ଣ୍ଣ ସ୍ଥଳଭାଗରେ ଅନେକ ଗୁଡ଼ିଏ ଦେଶ ଥାଏ ତାହାକୁ ମହାଦେଶ କହନ୍ତି । ମାନଚିତ୍ରରେ ଯେଉଁ ଅଂଶମାନ ଅଳ୍ପ ସବୁଜ ଦିଶୁଅଛି ତାହା ଜଳଭାଗ ବା ସମୁଦ୍ର; ଯେଉଁ ଅଂଶମାନ ଲାଲ ତାହା ଆମ୍ଭମାନଙ୍କର ଶାସନକର୍ତ୍ତା ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ଅଧୀନ ।

ସ୍ଥଳଭାଗରେ ନିମ୍ନଲିଖିତ ଦେଶମାନ ମାନଚିତ୍ରରେ ଦେଖି ପ୍ରତ୍ୟେକଟି ଭାରତର ଓ ପରସ୍ପରର କେଉଁ ଦିଗରେ ସ୍ଥିର କର; ଏଶିଆଟିକ ତୁରସ୍କ, ଆରବ, ପାରସ୍ୟ, ଅଫଗାନସ୍ଥାନ, ବେଲୁଚସ୍ଥାନ, ତିବତ, ପୂର୍ବଉପଦ୍ୱୀପ, ଭାରତୀୟଦ୍ୱୀପପୁଞ୍ଜ, ଚୀନ, କୋରିଆ ଓ ଏଶିଆଟିକ ରୁଷିଆ ।

ଏଶିଆର ସମସ୍ତ ଉତ୍ତରାଞ୍ଚଳ, ତୁରସ୍କର ଅଧିକାଂଶ, ଭାରତବର୍ଷର ଅଧିକାଂଶ ଓ ଚୀନର ଅଧିକାଂଶ ସମତଳ ଅଟେ । ହିମାଳୟର ଉତ୍ତରଦିଗରେ ତିବତ ଅତୀବ ଉଚ୍ଚ ଭୂମି ; ସେହିପରି ଉଚ୍ଚ ଭୂମିକୁ ମାଳ-ଭୂମି କହନ୍ତି । ଇଉରାଲ ପର୍ବତ ଏଶିଆଟିକ ରୁଷିଆର ପଶ୍ଚିମ ପ୍ରାନ୍ତରେ ଅଛି ।

ଏବଂ ଅଲ୍ଟାଇ ଓ ୟାବ୍ଲୋନୋଇ ପର୍ବତମାଳା ଉକ୍ତଦେଶ ଓ ଚୀନ-ସାମ୍ରାଜ୍ୟକୁ ବିଭକ୍ତ କରୁଅଛି । କକେଶସପର୍ବତ କାସ୍ପିୟାନ୍ ଓ କୃଷ୍ଣସାଗର ମଧ୍ୟରେ ; ଏଲବୁର୍ଜ କାସ୍ପିୟାନ୍‌ସାଗରର ଦକ୍ଷିଣସୀମାରେ ଏବଂ ହିନ୍ଦୁକୁଶ ଓ ପାମିର ଆମ୍ଭମାନଙ୍କ ଦେଶର—ଭାରତର ଉତ୍ତର-ପଶ୍ଚିମ କୋଣରେ ଅଛି ।

ମାନଚିତ୍ରରେ ଯେଉଁ ସୁବିସ୍ତୀର୍ଣ୍ଣ ଜଳଭାଗ ଦେଖୁଅଛ ତାହା ଏକ୨ ମହାସାଗର । ପ୍ରତ୍ୟେକ ମହାସାଗରର ନାମ ଅଛି । ସେଗୁଡ଼ିକ ଅପେକ୍ଷା ଊଣା ଜଳଭାଗକୁ ସାଗର ବୋଲନ୍ତି । ଏଶିୟାର ଦକ୍ଷିଣରେ ଭାରତ ମହାସାଗର, ପୂର୍ବରେ ପ୍ରଶାନ୍ତ ମହାସାଗର, ଉତ୍ତରରେ ଉତ୍ତର ମହାସାଗର, ପଶ୍ଚିମରେ ମହାସାଗର ନାହିଁ । ମାନଚିତ୍ରରେ ଦେଖିବ ଯେ କୌଣସି୨ ସ୍ଥାନରେ ଜଳଭାଗ ସ୍ଥଳଭାଗକୁ ଖାଇଗଲା ପ୍ରାୟ ଦିଶୁଅଛି । ଯେଉଁଠାରେ ସେପରି ହୋଇଅଛି ତାହାକୁ ଉପସାଗର ବୋଲନ୍ତି । ଯେଉଁ ଦେଶଠାରେ ସେପରି ହୋଇଅଛି ତାହାର ନାମ ଦେଇ ଉପସାଗରର ନାମ ହୋଇଅଛି । ବଙ୍ଗ ପ୍ରଦେଶର ନାମ ଦେଇ ବଙ୍ଗୋପସାଗର ; ପୁରୀଠାରେ ଯେ ସମୁଦ୍ର ଦେଖାଯାଏ ତାହା ବଙ୍ଗୋପସାଗର । ଭାରତବର୍ଷ ଓ ଆରବ ମଧ୍ୟରେ ଆରବ ସାଗର ; ଆରବ ଓ ପାରସ୍ୟ ମଧ୍ୟରେ ପାରସ୍ୟ ଉପସାଗର ; ଆରବର ପଶ୍ଚିମରେ ଲୋହିତ ସାଗର ; ଶ୍ୟାମ ଦେଶର ଦକ୍ଷିଣରେ ଶ୍ୟାମ ଉପସାଗର ; ଚୀନ ଓ ଜାପାନ ମଧ୍ୟରେ ଜାପାନ ସାଗର ; ଏଶିୟାଟିକ ରୁଷିଆର ଉତ୍ତର ପୂର୍ବରେ ଓକଟସ୍କ ଓ କାମସ୍କଟକା ସାଗର ଅଛି ।

ଅନ୍ତରୀପ କାହାକୁ ବୋଲନ୍ତି ? ଏଶିୟାରେ କେତୋଟି ଅନ୍ତରୀପ ମାନଚିତ୍ର ଦେଖି ଜାଣି ପାରୁଅଛ ? ଉତ୍ତର-ପୂର୍ବ କୋଣରେ ପୂର୍ବ-ଅନ୍ତରୀପ, ଆରବର ପୂର୍ବରେ ରସୁଲହେଡ୍, ଭାରତବର୍ଷର ଦକ୍ଷିଣରେ

କୁମାରିକା, ମଲକ୍କାର ଦକ୍ଷିଣରେ ରୋମାନଓ, କାମସ୍କଟକାର ଦକ୍ଷିଣରେ ଲୋପାଟକା ପ୍ରଧାନ ଅନ୍ତରୀପ ଅଟେ ।

ଦ୍ୱୀପ କଅଣ? ଅନେକଗୁଡ଼ିଏ ଦ୍ୱୀପ ନିକଟବର୍ତ୍ତୀ ହୋଇଥିଲେ ସବୁଗୁଡ଼ିକୁ ଦ୍ୱୀପପୁଞ୍ଜ ବୋଲଯାଏ । ଲିବାଣ୍ଟ ଉପସାଗରରେ ସାଇପ୍ରସ୍ ଓ ରୋଡସ୍, ଭାରତବର୍ଷର ଦକ୍ଷିଣରେ ଲଙ୍କା ବା ସିଲୋନ, ଭାରତୀୟ ଦ୍ୱୀପପୁଞ୍ଜ ( ସୁମାତ୍ରା, ଯାବା, ବୋର୍ଣ୍ଣିଓ, ସେଲିବସ୍ ), ମଲକ୍କା, ଫିଲିପାଇନ ଦ୍ୱୀପପୁଞ୍ଜ, ଚୀନର ଦକ୍ଷିଣରେ ହଂକଂ ଓ ପୂର୍ବରେ ଫର୍ମୋଜା ଏବଂ ଜାପାନ ଦ୍ୱୀପପୁଞ୍ଜ ପ୍ରଧାନ ଅଟେ ।

ଭାରତବର୍ଷ ଓ ଲଙ୍କା ଦ୍ୱୀପ ମଧ୍ୟରେ ଏକ ସଂକୀର୍ଣ୍ଣ ଜଳଭାଗ ଏକ ଦିଗରେ ବଙ୍ଗୋପସାଗର ଓ ଅନ୍ୟଦିଗରେ ଭାରତ ମହାସାଗରକୁ ଯୋଗ କରିଅଛି, ତାହାର ନାମ ପକ୍ ପ୍ରଣାଳୀ । ସେହିପରି ଯେଉଁ ସଂକୀର୍ଣ୍ଣ ଜଳଭାଗ ଦୁଇ ଦିଗରେ ପ୍ରକାଣ୍ଡ ଜଳଭାଗକୁ ଯୋଗ କରିଥାଏ ତାହାକୁ ପ୍ରଣାଳୀ ବୋଲନ୍ତି । ଲୋହିତ ଏବଂ ଆରବ ସାଗରକୁ ବାବେଲମାଣ୍ଡବ ପ୍ରଣାଳୀ ଯୋଗ କରିଅଛି । ଆରବ ସାଗର ଓ ପାରସ୍ୟ ଉପସାଗର ମଧ୍ୟରେ ଅରମଜ୍ ପ୍ରଣାଳୀ ଏବଂ ହରିତ ଉପସାଗର ଓ ଜାପାନୀ ସାଗର ମଧ୍ୟରେ କୋରିଆ ପ୍ରଣାଳୀ ଅଛି ।

ମାନଚିତ୍ରରେ ଅନେକଗୁଡ଼ିଏ ନଦୀ ଦିଶୁଅଛି । ତହିଁ ମଧ୍ୟରେ ଏସିଆଟିକ ରୁଷିଆରେ ଲେନା, ଏନସାଇ ଏବଂ ଏସିଆଟିକ ତୁରସ୍କରେ ଇଉଫ୍ରେଟିସ୍ ଓ ଟାଇଗ୍ରିସ୍, ଭାରତବର୍ଷରେ ସିନ୍ଧୁ, ଗଙ୍ଗା ଓ ବ୍ରହ୍ମପୁତ୍ର ଏବଂ ବ୍ରହ୍ମରେ ଇରାବତୀ ଏବଂ ଚୀନରେ କେଣ୍ଟନ୍ ଓ ୟାଂସିକିୟାଂ ପ୍ରଧାନ ଅଟେ ।

ଏସିଆଟିକ ତୁରସ୍କର ପ୍ରଧାନ ନଗର ସ୍ମର୍ଣ୍ଣା ଏକ ବୃହତ୍ ସହର ଅଟେ । ଆରବରେ ମସ୍କଟ୍, ମକ୍କା ଓ ମଦିନା, ପାରସ୍ୟରେ ତେହେରାନ, ଅଫଗାନିସ୍ତାନରେ କାବୁଲ୍, ଭାରତବର୍ଷରେ କଲିକତା, ଶ୍ୟାମରେ ବେଙ୍କକ୍,

ଶୀନରେ ପେକିଂ, ଜାପାନରେ ଟୋକିଓ, ଫିଲିପାଇନ ଦ୍ୱୀପପୁଞ୍ଜରେ ମେନିଲା ରାଜଧାନୀ ଓ ପ୍ରଧାନ ନଗରମାନ ଅଛି । ଯେଉଁ କାବୁଲୀମାନେ କିସ୍‌ମିସ ବାଦାମ ଆଣନ୍ତି ସେମାନଙ୍କ ମୁଲକ ଅଫଗାନସ୍ଥାନ ।

ଏଶିୟା ମହାଦେଶ ମଧ୍ୟରେ ଭାରତବର୍ଷର ଅଧିକାଂଶ, ପିନାଙ୍ଗ, ମଲକା, ସିଙ୍ଗାପୁର, ଲଙ୍କା, ଆଣ୍ଡାମାନ, ନକୋବର, ବୋର୍ଣ୍ଣିଓର ଉତ୍ତର-ପଶ୍ଚିମ ଭାଗ ଲାବୁଆନ, ଲୋହିତ ସାଗରରେ ପେରିମ, ଆରବରେ ଆଡେନ, ହଂକଂ ଓ ସାଇପ୍ରସ ଦ୍ୱୀପମାନ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କ ଅଧୀନ ଅଛି ।

---

୨୩ଶ ପାଠ ।

ବର୍ତ୍ତମାନ ପୃଥିବୀର ମାନଚିତ୍ର ଦେଖ । ଅମୃମାନଙ୍କ ମହାଦେଶ ପ୍ରାୟ ଆଉ ୫ ଗୋଟି ଅଛି । ଏଶିୟାର ଉତ୍ତର-ପଶ୍ଚିମ ଭାଗରେ ୟୁରାଲ ପର୍ବତର ପଶ୍ଚିମ ଅଛେ ୟୁରୋପ ମହାଦେଶ; ତହିଁର ଦକ୍ଷିଣରେ ଆଫ୍ରିକା; ୟୁରୋପ ଓ ଆଫ୍ରିକାର ପଶ୍ଚିମରେ ଉତ୍ତର ଆମେରିକା ଓ ଦକ୍ଷିଣ ଆମେରିକା; ଏବଂ ପ୍ରଶାନ୍ତ ମହାସାଗରର ମଧ୍ୟରେ ଓଶିୟେ-ନିୟାର ଅନ୍ତର୍ବର୍ତ୍ତୀ ଅଷ୍ଟ୍ରେଲିୟା, ନିଉଜିଲଣ୍ଡ ଓ ନିକଟସ୍ଥ ଦ୍ୱୀପସମୂହ ।

ୟୁରୋପ, ଏଶିୟା ଓ ଆଫ୍ରିକା ଲଗାଲଗି ହୋଇ ରହିଅଛି । ସେହି ତିନି ମହାଦେଶକୁ ଏକତ୍ର ପୂର୍ବାର୍ଦ୍ଧ ବା ପ୍ରାଚୀନ ପୃଥିବୀ ବୋଲନ୍ତି; ଉତ୍ତର ଓ ଦକ୍ଷିଣ ଆମେରିକା ଦୁଇ ସଂଲଗ୍ନ ମହାଦେଶକୁ ଏକତ୍ର ପଶ୍ଚିମାର୍ଦ୍ଧ ବା ନବୀନ ପୃଥିବୀ ବୋଲନ୍ତି । କିଛିକାଳ ପୂର୍ବେ ସେପରି ସ୍ଥଳଭାଗ ଓ ତହିଁରେ ମନୁଷ୍ୟ ଓ ଅନ୍ୟାନ୍ୟ ଜୀବଜନ୍ତୁ ଥିବା ବିଷୟ କେହି ଜାଣି ନ ଥିଲେ । ପ୍ରାୟ ୪୦୦ ବର୍ଷ ହେବ ଜଣେ ୟୁରୋପବାସୀ ଜାହାଜରେ ଯାଉଁ ଯାଉଁ ମହାସାଗରରେ ସ୍ଥଳ ଦେଖି ସେହିଠାରେ ଓହ୍ଲାଇଲେ । ସେଠାର



ପୃଥିବୀ

ପୃଥିବୀର ମାନଚିତ୍ର ।

ଲୋକଙ୍କ ସହିତ କଥୋପକଥନ କରିବାରେ ଜଣାଗଲା ଯେ ତାହା ଏକ ମହା-
ଦେଶର ଅଂଶ ମାତ୍ର । କ୍ରମଶଃ ଆଉ ଲୋକେ ସେଠାରେ ଯାଇ
ରହିଲେ । ସେହି ହେତୁରୁ ତାହାର ନାମ ନବୀନ ପୃଥିବୀ ହୋଇଅଛି ।

ନବୀନ ଓ ପ୍ରାଚୀନ ପୃଥିବୀ ମଧ୍ୟରେ ଅଟଲାଣ୍ଟିକ ମହାସାଗର । ଉଭୟ
ପୃଥିବୀର ଦକ୍ଷିଣରେ ଦକ୍ଷିଣ ମହାସାଗର । ତାହା ଛଡ଼ା ଆଉ ତନୋଟି
ମହାସାଗର ଅଛି ; ପ୍ରଶାନ୍ତ, ଭାରତୀୟ ଓ ଉତ୍ତର ମହାସାଗର । ପୃଥି-
ବୀରେ ସ୍ଥଳଭାଗ ଅପେକ୍ଷା ଜଳ ଭାଗ ଅଧିକ, ପ୍ରାୟ ଦ୍ୱିଗୁଣ ହେବ ।

ଅମ୍ଭମାନଙ୍କର ଶାସନକର୍ତ୍ତା ଇଂରେଜବାହାଦୁର ଇଉରୋପରୁ ଆସି-
ଅଛନ୍ତି । ସେହି ମହାଦେଶର ପଶ୍ଚିମ ଭାଗରେ କେତେଗୁଡ଼ିଏ ଦ୍ୱୀପ ଅଛି ;
ତହିଁ ମଧ୍ୟରେ ଗ୍ରେଟବ୍ରିଟେନ୍ ପ୍ରଧାନ । ତାହାହିଁ ଇଂରେଜ ବାହାଦୁରଙ୍କ
ସ୍ୱଦେଶ । ତାହା ପୁଣି ତନ ଭାଗରେ ବିଭକ୍ତ, ଇଂଲଣ୍ଡ, ସ୍କଟଲଣ୍ଡ ଓ ଆୟୁର-
ଲଣ୍ଡ । ସେଠାର ଲୋକେ ବଳ, ବିଦ୍ୟା, ବୁଦ୍ଧି, ବାଣିଜ୍ୟ, ଧନ, ସାହସ ଓ
ଧର୍ମ୍ମ ସକଳ ବିଷୟରେ ଶ୍ରେଷ୍ଠ ଅଟନ୍ତି । ଜଣେ ରାଜା ଅଛନ୍ତି ଏବଂ ପାର୍ଲିୟା-
ମେଣ୍ଟ ବୋଲି ଏକ ମହାସଭା ଅଛି । ସେହି ରାଜା ଅମ୍ଭମାନଙ୍କ ଭାରତସାମ୍ରା-
ଜ୍ୟର ସମ୍ରାଟ୍ । ସଭାର ପରାମର୍ଶ ଓ ରାଜାଙ୍କ ଆଦେଶ ଅନୁସାରେ ଦେଶର
ଶାସନ କାର୍ଯ୍ୟ ନିର୍ବାହିତ ହୁଏ । ରାଜଧାନୀ ଲଣ୍ଡନ ପୃଥିବୀରେ ଶ୍ରେଷ୍ଠ ଓ
ବୃହତ୍ତମ ନଗର ଅଟେ ; ତାହା ଛଡ଼ା ଆଉ ଅନେକ ବୃହତ୍ ନଗରମାନ
ଅଛି । ଲଣ୍ଡନ, ଲିବରପୁଲ ଓ ବ୍ରିଷ୍ଟଲ ପ୍ରଧାନ ବନ୍ଦର । ମ୍ୟାଞ୍ଚେଷ୍ଟରରେ
ସୂତା ଓ ଲଣ୍ଡନରେ ପଶମବସ୍ତ୍ରର ଅନେକ ବୃହତ୍ କଳକାରଖାନା ଅଛି ।
ତୁମ୍ଭେମାନେ ଯେଉଁ ବିଲାତି ଲୁଗା କିଣ ତାହା ସେହିଠାରୁ ଆସେ ।
ନଉକାଣ୍ଡରେ ପଥର କୋଇଲା ଓ ଲୁହାର ଖଣି ଅଛି ଏବଂ ଅନେକ
ପ୍ରକାର ଜାହାଜ ନିର୍ମିତ ହୁଏ । ବ୍ରିଟିଶ ଦ୍ୱୀପପୁଞ୍ଜ ବ୍ୟତୀତ ଇଉରୋପ
ମହାଦେଶରେ ଜିବ୍ରାଲର୍, ମାଲ୍ଟା ଓ ଗଜୋ ଦ୍ୱୀପମାନ ଇଂରେଜଙ୍କର

ଅଧୀନ ଅଛେ । ଇଯୁରୋପର ପ୍ରାୟ ସମସ୍ତ ଲୋକେ ଖ୍ରୀଷ୍ଟିୟାନ; କେବଳ ତୁରସ୍କରେ ମୁସଲମାନ ଅଛନ୍ତି ।

ଇଯୁରୋପର ଉତ୍ତରସୀମା ଉତ୍ତର ମହାସାଗର, ପଶ୍ଚିମରେ ଅଟଲାଣ୍ଟିକ ମହାସାଗର, ଦକ୍ଷିଣରେ ଭୂମଧ୍ୟ ସାଗର, ଏବଂ ପୂର୍ବରେ ଏଶିୟା ମହାଦେଶ ।

ଆଫ୍ରିକାର ଉତ୍ତରସୀମା ଭୂମଧ୍ୟସାଗର, ପଶ୍ଚିମରେ ଅଟଲାଣ୍ଟିକମହାସାଗର, ଦକ୍ଷିଣରେ ଦକ୍ଷିଣ ମହାସାଗର, ପୂର୍ବରେ ଭାରତମହାସାଗର ଓ ଲୋହିତସାଗର । ସେ ମହାଦେଶରେ ବହୁସଂଖ୍ୟକ ଅସଭ୍ୟ ଜାତି ଓ ନାନାବିଧ ହିଂସ୍ର ଜୀବଜନ୍ତୁ ଅଛନ୍ତି; ତନ୍ମଧ୍ୟରେ ସିଂହ ପ୍ରଧାନ, ଅସଭ୍ୟ ଜାତିମାନେ ଅତ୍ୟନ୍ତ କୃଷ୍ଣବର୍ଣ୍ଣ । ଶତ ଶତ ମାଇଲ ବିସ୍ତୀର୍ଣ୍ଣ ବାଲୁକାମୟ ପ୍ରଦେଶ ଦେଖାଯାଏ; ତାହାକୁ ମରୁଭୂମି ବୋଲନ୍ତି । ଶାହାରା ଏକ ପ୍ରକାଣ୍ଡ ମରୁଭୂମି । ତହିଁରେ ଉଟ ଛଡ଼ା ଅନ୍ୟ କୌଣସି ପ୍ରାଣୀ ବା ବାହନ ଯାଇ ଆସି ପାରେ ନାହିଁ ।

ଆଫ୍ରିକାକୁ ଇଯୁରୋପୀୟ ଜାତିମାନେ ଖଣ୍ଡ ୨ କରି ବାଣ୍ଟି ନେଇଅଛନ୍ତି । ଇଂରେଜମାନେ ଲୋହିତ ସାଗର କୂଳସ୍ଥ ସୁଏକିମ୍, ଗାମ୍ବିଆନଦୀ ପ୍ରଦେଶ, ଶିଏରାଲିଓନ, ସୁବର୍ଣ୍ଣ ଉପକୂଳ ଏବଂ ପଶ୍ଚିମ ଉପକୂଳରେ ଲେଗସ୍ ଅଧିକାର କରିଅଛନ୍ତି । ଇଜିପ୍ଟ ବା ମିଶର ପ୍ରଦେଶ ତୁରସ୍କ ସୁଲତାନଙ୍କ ଅଧୀନ ହେଲେହେଁ ଇଂରେଜବାହାଦୁରଙ୍କ ଆଶ୍ରୟରେ ଥାଏ । ଦକ୍ଷିଣାଂଶରେ କେପ୍‌କଲନି ଓ ନାଟାଲ୍ ଇଂରେଜମାନଙ୍କର ପ୍ରଧାନ ରାଜ୍ୟ । ତହିଁରେ ସୁବର୍ଣ୍ଣ ଓ ହୀରକର ଖଣି ଅଛି ।

ମାନଚିତ୍ରରେ ଦେଖ ଯେ ଉତ୍ତର ଓ ଦକ୍ଷିଣ ଆମେରିକା ଦୁଇଟି ମହାଦେଶକୁ ଅତି ସଂକୀର୍ଣ୍ଣ ଭୂମିଖଣ୍ଡ ଯୋଗ କରିଅଛି । ତାହାର ନାମ ପାନେମା । ସେହିପରି ଯେଉଁ ସଂକୀର୍ଣ୍ଣ ଭୂମିଖଣ୍ଡ ଦୁଇ ବୃହତ୍ ଭୂମିଖଣ୍ଡକୁ ଯୋଗ କରିଥାଏ ତାହାକୁ ଯୋଜକ ବୋଲନ୍ତି । ପାନେମା ଏକ ଯୋଜକ ।

ଉତ୍ତର-ଅମେରିକାର ଉତ୍ତରରେ ଉତ୍ତରମହାସାଗର ; ଦକ୍ଷିଣ ଓ ପଶ୍ଚିମରେ ପ୍ରଶାନ୍ତମହାସାଗର ଏବଂ ପୂର୍ବରେ ଆଟଲାଣ୍ଟିକମହାସାଗର । ତାହାର ଉତ୍ତର ଅଞ୍ଚଳର ଅଧିକାଂଶକୁ ବ୍ରିଟିଶ ଅମେରିକା ବୋଲନ୍ତି ଏବଂ ତାହା ଇଂରେଜବାହାଦୁରଙ୍କ ଅଧୀନ । ବାଙ୍କୁବାର ଦ୍ୱୀପ, ବ୍ରିଟିଶ କଲମ୍ବିଆ, କାନେଡା ପ୍ରଦେଶ, ନୋବାସ୍କୋଶିଆ, ନିଉଫାଉଣ୍ଡଲାଣ୍ଡ, ଲାବ୍ରେଡର ଓ ଆଉ କେତେଗୁଡ଼ିଏ କ୍ଷୁଦ୍ର ଦ୍ୱୀପ ତହିଁ ମଧ୍ୟରେ ଯାଏ । ଅଟୋଆ ତାହାର ରାଜଧାନୀ, ଏକ ବୃହତ୍ ନଗର । ସେ ମହାଦେଶରେ ଅନେକ ବଡ଼ ହ୍ରଦ ଏବଂ ନାଏଗରା ନାମରେ ଏକ ପ୍ରକାଣ୍ଡ ଜଳପ୍ରପାତ ଅଛି । ଦକ୍ଷିଣ-ପୂର୍ବଭାଗରେ ଯେଉଁ ଦ୍ୱୀପମାନ ଦେଖୁଅଛ ତାହାର ନାମ ପଶ୍ଚିମ-ଭାରତୀୟ ଦ୍ୱୀପପୁଞ୍ଜ ; ତନ୍ମଧ୍ୟରେ ବର୍ମୁଡାସ, ବାହାମା ଓ ଆଉ କେତେଗୁଡ଼ିଏ ଇଂରେଜମାନଙ୍କ ଅଧୀନ ଅଟେ ।

ଦକ୍ଷିଣଅମେରିକାର ଉତ୍ତର ଓ ପୂର୍ବରେ ଆଟଲାଣ୍ଟିକମହାସାଗର ; ପଶ୍ଚିମରେ ପ୍ରଶାନ୍ତମହାସାଗର ; ଏବଂ ଦକ୍ଷିଣରେ ଦକ୍ଷିଣମହାସାଗର । ବ୍ରିଟିଶଗାୟନା ଇଂରେଜଙ୍କର ଅଧୀନ ଅଟେ ଏବଂ ତହିଁର ରାଜଧାନୀ ଜର୍ଜଟାଉନ ।

ମାନଚିତ୍ରରେ ଦେଖିବ ଯେ ଏକ ପର୍ବତଶ୍ରେଣୀ ଉଭୟ ଅମେରିକାର ଉତ୍ତର ପ୍ରାନ୍ତରୁ ଦକ୍ଷିଣ ପ୍ରାନ୍ତ ପର୍ଯ୍ୟନ୍ତ ଯାଇଅଛି । ଉତ୍ତରଅମେରିକାରେ ତାହାର ନାମ ରକୀ ଏବଂ ଦକ୍ଷିଣ ଅମେରିକାରେ ଅନ୍ଦିସ । ଏତେ ଦୀର୍ଘ ପର୍ବତ ଶ୍ରେଣୀ ପୃଥିବୀରେ ଆଉ ନାହିଁ ।

ଭାରତୀୟ ଓ ପ୍ରଶାନ୍ତମହାସାଗର ମଧ୍ୟରେ ଓଶିଆନିଆ ଦ୍ୱୀପପୁଞ୍ଜ । ତାହା ଦୁଇଭାଗରେ ବିଭକ୍ତ ; (୧) ଦକ୍ଷିଣ-ପଶ୍ଚିମାଂଶ, ଅଷ୍ଟ୍ରେଲିଆ ଓ (୨) ପୂର୍ବାଂଶ ପଲିନେଶିଆ ; ପ୍ରଥମ ଭାଗରେ ଅଷ୍ଟ୍ରେଲିଆ, ତାସ୍ମାନିଆ, ଓ ନିଉଜିଲାଣ୍ଡ ଏବଂ ଦ୍ୱିତୀୟ ଭାଗରେ ଫିଜି ଦ୍ୱୀପପୁଞ୍ଜ ଇଂରେଜଙ୍କର

ଅଧୀନ ଅଟେ । ଅଷ୍ଟ୍ରେଲିୟାରେ ଖଣିଜ ପଦାର୍ଥ ପ୍ରଚୁର ପରିମାଣରେ ମିଳେ; ତମ୍ବା, ପଥର କୋଇଲା, ରୂପା ଓ ଟିନର ପ୍ରକାଣ୍ଡ ଖଣିମାନ ଅଛି; ନିଉଜିଲଣ୍ଡରେ ସୁବର୍ଣ୍ଣ ଓ ଟାସ୍ମେନିୟାରେ ଟିନର ଖଣିଅଛି ।

ସକଳ ମହାଦେଶ ମଧ୍ୟରେ ଏଶିୟା ବୃହତ୍ତମ ଓ ଇୟୁରୋପ କ୍ଷୁଦ୍ରତମ ଅଟେ । ସକଳ ମହାଦେଶକୁ ମେଳ ଭୂମଣ୍ଡଳ ହୋଇଅଛି ।

Printed at the Orissa Mission Press,—R. J. Grundy, for the Publishers.

## Macmillan's New Series of Text-Books for Schools in India. Approved by the Director of Public Instruction. Bengal.



| | | | |
|---|---|---|---|
| Oriya Alphabet and Spelling Book. For Infant Class and Standard I | ... | As. | 1 |
| * Oriya Lower Primary Science Reader | ... | " | 3 |
| Oriya Lower Primary Arithmetic | ... | " | 3 |
| * Oriya Upper Primary Science Reader | ... | " | 4 |
| * Oriya Upper Primary History Reader Bengal | | " | 3 |
| Oriya Upper Primary Geography Reader | ... | " | 3 |
| Oriya Upper Primary and Middle Vernacular Arithmetic | ... | " | 8 |
| * Oriya Upper Primary Literature Book | ... | " | 3 |
| Oriya Upper Primary and Middle Vernacular Practical Geometry and Mensuration | | " | 4 |
| * Oriya Middle Vernacular Science Reader | ... | " | 7 |
| * Oriya Middle Vernacular History Reader | ... | " | 4 |
| * Oriya Middle Vernacular Literature Book | ... | " | 6 |
| * Oriya Middle Vernacular Geography Reader... | | " | 4 |

*For any of these books apply to*

### The Superintendent.

**Orissa Mission Press, Mission Road, Cuttack.**

* **These books have been approved for Madras Presidency.**

ଡିରେକ୍ଟର ମହୋଦୟଙ୍କ କର୍ତ୍ତୃକ ଅନୁମୋଦିତ ଭାରତୀୟ ବିଦ୍ୟାଳୟ-
ସମୂହର ପାଠୋପଯୋଗୀ ମ୍ୟାକ୍‌ମିଲାନ କୋମ୍ପାନିର
ପୁସ୍ତକାବଳୀ ।



* ଓଡ଼ିଆ ବର୍ଣ୍ଣବୋଧ ... ... ... ... ... ଟ • /
* ଓଡ଼ିଆ ନିମ୍ନ ପ୍ରାଥମିକ ବୈଜ୍ଞାନିକ ପାଠ ... ... ... ଟ • ୵
ଓଡ଼ିଆ ନିମ୍ନ ପ୍ରାଥମିକ ଅଙ୍କ ପୁସ୍ତକ ... ... ... ଟ • ୵
* ଓଡ଼ିଆ ଉଚ୍ଚ ପ୍ରାଥମିକ ବୈଜ୍ଞାନିକ ପାଠ ... ... ... ଟ • ।
* ଓଡ଼ିଆ ଉଚ୍ଚ ପ୍ରାଥମିକ ଐତିହାସିକ ପାଠ (ବଙ୍ଗଦେଶ) ... ଟ • ୵
ଓଡ଼ିଆ ଉଚ୍ଚ ପ୍ରାଥମିକ ପରୀକ୍ଷାର ଉପଯୋଗୀ ଭୌଗୋଳିକ ପାଠ ଟ • ୵
ଓଡ଼ିଆ ଉଚ୍ଚ ପ୍ରାଥମିକ ଏବଂ ମଧ୍ୟ ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ
ଅଙ୍କ ପୁସ୍ତକ ... ... ... ... ଟ • ୳
* ଓଡ଼ିଆ ଉଚ୍ଚ ପ୍ରାଥମିକ ସାହିତ୍ୟ ପାଠ ... ... ... ଟ • ୵
ଓଡ଼ିଆ ଉଚ୍ଚ ପ୍ରାଥମିକ ଏବଂ ମଧ୍ୟ ଓଡ଼ିଆ ବ୍ୟାବହାରିକ ଜ୍ୟାମିତି ଓ
ପରିମିତି ... ... ... ... ଟ • ।
* ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ ବୈଜ୍ଞାନିକ
ପାଠ ... ... ... ... ଟ • ।୵
* ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ ଐତିହାସିକ
ପାଠ ... ... ... ... ଟ • ।
* ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ସାହିତ୍ୟ ପାଠ ... ... ଟ • ।୵
* ଓଡ଼ିଆ ମଧ୍ୟଓଡ଼ିଆ ବା ଛାତ୍ରବୃତ୍ତି ପରୀକ୍ଷାର ଉପଯୋଗୀ ଭୌଗୋ-
ଳିକ ପାଠ ... ... ... ... ଟ • ।

ଉପରୋକ୍ତ ପୁସ୍ତକ ସବୁ ଓଡ଼ିଶା ମିଶନ ଯନ୍ତ୍ରାଳୟର ସୁପରିଣ୍ଟେଣ୍ଡେଣ୍ଟଙ୍କ
ନିକଟରେ ପ୍ରାପ୍ତବ୍ୟ ।

* ଏହି ପୁସ୍ତକଗୁଡ଼ିକ ମାନ୍ଦ୍ରାଜ ସରକାର ନିମନ୍ତେ ମଞ୍ଜୁର ହୋଇଅଛି ।